ଝଞ୍ଜାନଳ, ଝଞ୍ଜାବାତ, ଝଂଝାବାତ, } ବି. ( ଝଞ୍ଜା-ଅନଳ, ବାତ ) ଝଡ଼, ତୋଫାନ; ବର୍ଷାକାଳୀନ ପବନ ।

ଝଞ୍ଜାରିବା, କ୍ରି. (ଦେଶଜ) ସର୍ବସ୍ୱ ଉତ୍କର୍ଷ ପ୍ରକାଶ କରିବା, ଜଣିବା; ଇତସ୍ତତଃ ସ୍ଖଳିତ କରିବା । ଯଥା—

ଆଣ୍ଠୁରେ ମାରି କର ଝଞ୍ଜାରିଲେ ଫରି । କୃ.ଭ୍ର.ଆ.ପ.

ଝଞ୍ଜାଳ, ଝଞ୍ଜାଳି, } ବି. (ଦେଶଜ) ବାଦ୍ୟବିଶେଷ । ଯଥା—

ବାଇଲେ ବୀଣାଯନ୍ତ୍ର ତାଳ,
କଂସାଳ ଝଞ୍ଜାଳ ମର୍ଦ୍ଦଳ । ମା. ମା.

ଝଞ୍ଜାଳ ବେଣୁ ବୀଣା ବଜାନ୍ତି କେହୁ ଅବା । ନୃ.ପୁ.ଚ.ଡ.

ଝଞ୍ଜିରି, ବି. (ଦେଶଜ) ଶିକୁଳି ।

ଝଂଝଟିଆ, ବିଂ. (ଦେଶଜ) କାର୍ଯ୍ୟରେ ବ୍ୟସ୍ତ; ଦୁଷ୍କର, କଠିଣ; ଗୋଳମାଳିଆ ।

ଝଟ, କ୍ରି. ବିଂ. (ଝଟିତି ଶବ୍ଦଜ) ଶୀଘ୍ର । ଯଥା—

ବିବସ୍ତ୍ର ହୋଇଣ ପଳାଇଲେ କୁନ୍ତିଭଟେ,
ସୂପକାର ଆଦିଙ୍କି ଭେଟିଲେ ଯାଇ ଝଟେ । ସା.ଭ୍ର.ବି.

ଝଟଝଟ, ଝଟ୍‌ଝଟ୍, } ବି. (ଦେଶଜ) ଶୀଘ୍ର । ଯଥା—

ଭାନୁକର ଲାଗି ଝଟକଇ ଝଟ ଝଟ । ଲ୍ଲ. ବ.

କ୍ରି. ବିଂ. ଶୀଘ୍ର । ଯଥା—

ସୁବର୍ଣ୍ଣନିର୍ମିତ ପହଁରି ନିଜ କରେ ଧରି,
ରାଜପୁତ୍ରେ ପହଁରନ୍ତି ଝଟ ଝଟ କରି । ସା. ଭ୍ର. ସ.

ଝଟକ, ବି. (ଦେଶଜ) କାନ୍ତି । ବିଂ. ଯାହା କ୍ଷଣକାଳ ନିମନ୍ତେ ତେଜ ପ୍ରକାଶ କରେ । ଯଥା—

ଝିନପଟନୀ ଅଙ୍ଗେ ଶୋଭା,
ଝଟକ ବିଜୁଳିର ଆଭା । କ. ଲୋ.

କ୍ରି. ବିଂ. ଶୀଘ୍ର ।

ଝଟକା, ବି. (ଯାବନିକ) ସାନ ଘୋଡ଼ାଗାଡ଼ି ।

ଝଟକଣି, ଝଟକନ, } କ୍ରି. ବିଂ. ( ଦେଶଜ ) ଶୀଘ୍ର, ହଠାତ୍ । ଯଥା—

ନକ୍ଷତ୍ର ବାର ତିଥି କରଣ ଯୋଗ ଆଦି,
ଏମାନ ଝଟକଣି ଢଣନ୍ତି ହୃଦେ ଭେଦି । ନୃ.ପୁ.ସ.ତ.

ଝଟକିବା, କ୍ରି. (ଦେଶଜ) ଜାଜ୍ୱଲ୍ୟମାନ ହେବା ।

ଝଟତି, କ୍ରି. ବିଂ. (ଝଟିତି ଶବ୍ଦର ଅପଭ୍ରଂଶ) ଶୀଘ୍ର ।

ଝଟସୀ, ଝଟନେସୀ, } ବି. ସ୍ତ୍ରୀ. (ଦେଶଜ) ଦେବୀଙ୍କ ନାମବିଶେଷ । (ଝାଡ଼େଶ୍ୱରୀ ଶବ୍ଦ ଦେଖ ।)

ଝଟପଟ, ବି. (ଦେଶଜ) ସତ୍ୱର ।

ଝଟପରି, କ୍ରି.ବିଂ. (ଦେଶଜ) ଶୀଘ୍ର, ଅତିଶୀଘ୍ର । ଯଥା—

ଝଟପରି ନିଦ୍ରା ଭାଜିଗଲା ମୋର ଜାଡ଼ର ଯାସେ । ଲ୍ଲ.ବ.

ଝଟବରୀ, ବି. ସ୍ତ୍ରୀ. (ଦେଶଜ) ଦେବୀଙ୍କ ନାମବିଶେଷ । (ଝାଡ଼େଶ୍ୱରୀ ଶବ୍ଦ ଦେଖ ।)

ଝଟା, ବି. (ଦେଶଜ) ଶିମ୍ବ; ଝୁଟି ଅର୍ଥାତ୍ ମୁକୁଳ ଆଦିରେ ଲେଖିବା ଚିତା । ଯଥା—

ଆମ୍ରମଗୋଟି ଲିପି ଆପଣା ଝଟା ଦେବ,
ପାଣିଝରିଏ ଫଳରୁ ଗୁଣ୍ଡିଏ ଆଣିବ । ସା. ଭ୍ର. ଆ.

ଝାଟି ଅର୍ଥାତ୍ ବୃକ୍ଷ ଗୁଳ୍ମାଦିର ସରୁ ସରୁ ଶାଖା ।

ଝଟାପଟି, ଝଟାପଟା, } ବି. (ଦେଶଜ) କଳହ, ମରାମରି; ମୁହାଁମୁହିଁ ।

ଝଟାପଟା, ବିଂ. (ଦେଶଜ) ଯାହା କୌଣସି ବସ୍ତୁରେ ଲାଗିଲେ ଛାଡ଼େ ନାହିଁ । ଯଥା—

କପ କଣ୍ଟା, କାନାକୋଲି କଣ୍ଟା,
ଯହିଁରେ ଲାଗିବ ଝଟାପଟା । କଥାର ଲଥା ।

ଝଟାଳିଆ, ବିଂ. (ଦେଶଜ) ଝାଟିପୂର୍ଣ୍ଣ; ଯେଉଁ ମୃଗର ଶୃଙ୍ଗମାନ ବଡ଼ ଓ ବିଶେଷ ଶାଖାଯୁକ୍ତ ।

ଝଟିକା, ବି. (ପ୍ରାକୃତିକ) ତୋଫାନ, ବାତ୍ୟା ।

ଝଟିତି, କ୍ରି. ବିଂ. (ଝଟ୍-ଇତ) ଶୀଘ୍ର, ଦ୍ରୁତ, ବେଗ ।

ଝଡ଼, ଝଡ, ବି. (ଝଟିକା ଶବ୍ଦଜ ପ୍ରାକୃତ) ଅବିଶ୍ରାନ୍ତ ବୃଷ୍ଟିସହ ପ୍ରବଳ ପବନ, ତୋଫାନ ।

ଝଡ଼ା, ବି. (ଦେଶଜ) ଝାଡ଼ିବା; ପହଁରିବା; ମନ୍ତ୍ରିବା ଅର୍ଥାତ୍ ଭୂତ ପ୍ରେତାଦି ଲାଗିଥିଲେ ମନ୍ତ୍ର ପଢ଼ି ମାର୍ଜନ କରିବା; ପୁଷ୍ପଗୁଚ୍ଛ । ଯଥା—

ଝଡ଼ା ସଜଡ଼ାକାଲେ ସୁମନସରେ । ପ୍ରେ. ସୁ. ନି.

ଏକପ୍ରକାର ପିଠା । ଯଥା—

ଝଡ଼ାବଡା ଲଡ଼ୁ କୋରା ଷଡରସ ବିଧି । ନୃ.ପୁ.ଭୃ.ତ.

୧୨୫

ଗଛରୁ ଝଡ଼ିବା । ବିଂ. ଯାଉ । ଯେପରି— ଝଡ଼ା ମଞ୍ଜି । ଯେ ଝାଡ଼ଇ; ଯାହାକୁ ଝାଡ଼-ଥାଉଁ । କ୍ରି. ବିଂ. ନିଃଶେଷରେ । ଯଥା—

ପଣ୍ଡିତମାନଙ୍କ ଗାଦି ଖାଲିଅଛି ପଡ଼ି,
ଯାବନ୍ତ ଶାସନଝଡ଼ା ପାଉଛନ୍ତି ରଡ଼ି । ଉ. ଭ୍ର.

ଝଡ଼ାମହୁର, ଝଡ଼ାବେଶର, ବି. (ଦେଶଜ) ଯେଉଁ ମହୁର ଭିଆଣ ବା ବେଶର ଭିଆଣରୁ ମାଛକଣ୍ଟା କଢ଼ା ହୋଇଥାଏ ।

ଝଡ଼ପୋକ, ଝରପୋକ, ଝଡ଼ିଆପୋକ, ଝରିଆପୋକ, } ବି. (ଦେଶଜ) ବୃଷ୍ଟିସୂଚକ କୀଟବିଶେଷ ବା ଏକପ୍ରକାର ପକ୍ଷଯୁକ୍ତ ଉଇ ।

ଝଡ଼ିବା, କ୍ରି. (ଦେଶଜ) ବୃକ୍ଷାଦିରୁ ଖସିପଡ଼ିବା; କ୍ଷୀଣ ହେବା । ଯଥା—

ଝଡ଼ିବ ବଳ କୋମଳ ଗୁଡ଼ିରୁ,
ଝସିଯିବ ଝାଡ଼ିପିଡ଼ା ତାଡ଼ିରୁ । କ. ଚ. ଚ.

ଅନ୍ନ ଆଦି ପେଟରେ ଜୀର୍ଣ୍ଣ ହେବା ।

ଝଡ଼େଇବା, ଝଡ଼ାଇବା, କ୍ରି. (ଦେଶଜ) ତଳକୁ ଖସାଇପକାଇବା; ଅନ୍ନାଦିକୁ ବ୍ୟାୟାମ-ଦ୍ୱାରା ଜୀର୍ଣ୍ଣ କରାଇବା ।

ଝଣଝଣ, ଅଂ. (ଦେଶଜ) ଅନୁକରଣ ଶବ୍ଦ-ବିଶେଷ ।

ଝଣତ୍କାର, ଝନତ୍କାର, ବି. (ଝନତ୍-କାର) ଝନ୍‌ଝନ୍ ଶବ୍ଦ; ଅନୁକରଣ ଶବ୍ଦ ।

ଝଣ୍ଡା, ବି. (ଦେଶଜ) ମାଳା । ଯଥା—

ଯୋଗବାସିଙ୍କର ଦୁରିତବାଣ ମଙ୍ଗଳଝଣ୍ଡା । ଉଷା ।

ଝନଝନ, ଝନଝନା, ଝନନ, ଝନ୍‌ଝନ୍, } ବି. (ଦେଶଜ) ଶବ୍ଦ-ବିଶେଷ । ଯଥା—

ଗମ୍ଭୀର ସମର ବାଦ୍ୟ ଅସ୍ତ୍ରର ଝନ୍‌ଝନା । କ. ବ.
ନାହିଁ ଏଥି ରଣବାଦ୍ୟ ଅସ୍ତ୍ରର ଝନଝନା । ଜା. ପ.
ଝନନ କଙ୍କିଣୀ ମଧୁର । ବ. ଚ. ମ.

ଝପ, ଝପକିନ, ଝପକିନା, କ୍ରି. ବିଂ. (ଦେଶଜ) ଶୀଘ୍ର ।

ଝପଟ, ବି. (ଦେଶଜ) ଦଉଡ଼, ଧାଇଁବା । ଯଥା—

ଘୋଟକ ଝପଟ ଧୂଳି ଘୋଟେ ନଭସ୍ଥଳ । କ. ବ.

ଝପଟିବା, କ୍ରି. (ଦେଶଜ) ଦଉଡ଼ିବା, ଧାବମାନ କରିବା ।

ଝପଟାଇବା, ବି. (ଦେଶଜ) ଧାବମାନ କରାଇବା । ଯଥା—

ଝପଟାଇଦେଲି ଖରେ ତୁରଙ୍ଗମ ସେ କାନ୍ତାର ପଥେ ।
ଯ. କେ.

ଝବା, ଝୁବା, ଝୋବା, ବି. (ଦେଶଜ) ସାନ କଳସୀ । ଯଥା—

ଝବା ବିନା ନକ ବାରି,
ଝାଙ୍କରେ ହୋଇବ ଧରି । ବ. ଚ. ମ.

ଝମକ, ଝମକା, ବି. (ଦେଶଜ) ଧମକ, ଦାଉ । ଯଥା—

ଏ ମହାଭୈରବ ଅସ୍ତ୍ରର ଝମକ । ଦ. ବା.

ଝମଝମ ଶବ୍ଦ, ଝଙ୍କାର ଶବ୍ଦ । ଯଥା—

ଝିଙ୍କାର ଝଙ୍କାର ଝୁଣ୍ଟିଆ ଝମକ
ଚମକ ପକାଇ ଯିବାରେ । ଲ. ବ.

ଝମକିବା, ଝମକାଇବା, ବି. (ଦେଶଜ) ଧମକାଇବା । ଯଥା—

ଝମକ, ଝଗଡ଼ା ଦୁଷ୍ଟେ କରନ୍ତୁ । ବ. ଚ. ମ.

ଦବିଯିବା । ଯଥା—

ଅନ୍ଧାର ଗୁଡ଼ରେ କଣା ଝମକେ,
ଯାହା ପାଏ ତାହା ଅଣ୍ଟାରେ ଜାକେ ।

ଝମଝମ, ବି. (ଦେଶଜ) ଅଳଙ୍କାରାଦିର ଶବ୍ଦ-ବିଶେଷ ।

ଝର, ବି. (ଝୃ—ଚ୍ୟୁତ ହେବା-ଅ) ନିର୍ଝର, ଉତ୍ସ ।

ଝରକା, ବି. (ଦେଶଜ) ଖିଡ଼କି ।

ଝରଝର, ଝର୍ଝର, } ବି. (ଦେଶଜ) ଜଳଝରଣର ଅନୁକରଣ ଶବ୍ଦ । ଯଥା—

ଝର୍ଝର ଶବଦେ ଭୃଗୁରୁ ଭୃଗୁକୁ ଡେଇଁ ପଡ଼ଇ । ଉଷା ।

ଝରଝଗ, ବି. (ଝର୍ଝର ଶବ୍ଦଜ) ବାଦ୍ୟବିଶେଷ । ଯଥା—

ତୁରୀ ଭେରୀ ଢକ୍‌କା ଢୋଲ ମଧୁରିକା
ଝରଝଗ ଜଗଝମ୍ପା । ଯ. କେ.

ଝରଣ, ବି. (ଝର ଶବ୍ଦଜ) ନିର୍ଝର ।

ଝଗ, ବି. (ଦେଶଜ) ପୁଷ୍ପଗୁଚ୍ଛ; ସାନ ମହାଦେଇ । ଯେପରି—ଝଗଦେଈ ।

ଝଗକାଠି, ବି. (ଦେଶଜ) ସ୍ତ୍ରୀମାନଙ୍କର ଶିରୋ-ଭୂଷଣବିଶେଷ । ଯଥା—

କଣିକା ଝଗକାଠିକି ଦେଖାଇ ଯେ । ବୈ. ବ.

ଝର, ଝର୍ଣ୍ଣ, ବି. (ଦେଶଜ) ଜଳପାତ୍ରବିଶେଷ । ଯଥା—

ବାରି ପୂର୍ଣ୍ଣ କଲି କାଚଝର୍ଣ୍ଣ,
ନାନା ଜାତି କୁସୁମକୁ ଭରି । ଲ. ବ.

ଉପରେ ସାନ ସାନ ଛିଦ୍ର ହେବା ପରିମାର ପାଣି ଛିଞ୍ଚିବାର ପାତ୍ରବିଶେଷ ।

ଝରିବା, କ୍ରି. (ଝର୍ ଧାତୁଜ) କ୍ଷରିବା; ନିର୍ଗତ ହେବା ।

ଝର୍ଝର, ବି. (ଝର୍ଝ୍—ରବ କରିବା-ଅର) ଶବ୍ଦ-ବିଶେଷ; ବାଦ୍ୟବିଶେଷ; କଳିଯୁଗ; ବେତ୍ରନିର୍ମିତ ଦଣ୍ଡବିଶେଷ । (ସ୍ତ୍ରୀ-ଝର୍ଝରୀ) ବେଶ୍ୟା ।

ଝଲକ, ବି. (ଦେଶଜ) କାନ୍ତି; କଂସାଳବାଦ୍ୟ । ଆନ୍ଦୋଳନ । ଯଥା—

ହାହା ବାଲୀ ଫୁଲ ଝଲକା ଝଲକ
ପଲକ ଘଉଡ଼ି ଦେଉଛି । ଲ. ବ.

ବିଂ. ପ୍ରତିବିମ୍ବିତ; ଦୀପ୍ତ । ଯଥା—

ଝଲକଅଙ୍ଗୀ ତ କରୁଛୁ ଭଙ୍ଗୀ ତ
ବଗିଚରେ କେଉଁଠେ ଗୁରୁ ।

ଝଲକଲଡ଼ୁ, ବି. (ଦେଶଜ) ଅତ୍ୟୁତ୍କୃଷ୍ଟ ମିଷ୍ଟାନ୍ନବିଶେଷ ।

ଝଲକା, ବି. (ଦେଶଜ) କର୍ଣ୍ଣଭୂଷଣବିଶେଷ । (ଝଲକାଇବା ପଦ ଦେଖ ।) (ଗଡ଼ଜାତ) ଝରକା, ବାତାୟନ; ଝଲକଦଣ୍ଡି ; ଆଘାତ-ଦ୍ୱାରା ଉପରକୁ ଛିଞ୍ଚିଡ଼ିବା ଜଳ ବା ତାହାର ପରିମାଣ ।

ଝଲକାଇବା, କ୍ରି. (ଦେଶଜ) ଆନ୍ଦୋଳନ କରିବା, ଚହଲାଇବା । ଯଥା—

ଝଲକାଉ ତ ଝଲକା ହଂସକୁ କରି କି ମଜା ।
କୋ. ବ୍ର. ସୁ.

ଝଲକାଏ, ବିଂ. (ଦେଶଜ) ମନ୍ଦାଏ । (ତରଳ ପଦାର୍ଥ ପ୍ରତି ପ୍ରଯୋଜ୍ୟ ।)

ଝଲକିବା, କ୍ରି. (ଦେଶଜ) ଚହଲିବା, ଆନ୍ଦୋଳିତ ହେବା; ସଞ୍ଚରିବା; ଝଟକିବା । ଯଥା—

ଏତେ ବୋଲି ଈଶ୍ୱର ହୋଇଲେ ପ୍ରଚଣ୍ଡ,
ଅଗ୍ନି ଝଲକଲା ପ୍ରାୟେ କମ୍ପିଲେ ବ୍ରହ୍ମାଣ୍ଡ । ନୃ. ପୁ. ଦ୍ୱି. ଭ.

ଆନ୍ଦୋଳିତ ହେବା ଅର୍ଥରେ । ଯଥା—

ଝଲକଗଲା କୃଷ୍ଣ ଅକାରଣେ । କ. ଚ. ଚ.

ସଞ୍ଚରିବା ଅର୍ଥରେ । ଯଥା—

ଶତ ମନୋରଥ ଝଲକେ ଯେଣ୍ହେ ଆଶାକାନନେ ।
ଚ. ଘ୍ରା.

ଝଲଝଲିଆ, ବିଂ. (ଦେଶଜ) ଦୀପ୍ତିଯୁକ୍ତ ।

ଝଳଝଳିଆ, ବି. (ଦେଶଜ) ହସ୍ତିକର୍ଣ୍ଣ; ଆସ୍ଫାଳନ । ବିଂ. ସରୁ । ଯଥା—

ରୁପାର ଜରି ପଞ୍ଝା କି ଚକଚକିଆ,
ବନ୍ଧିଅଛୁ ପାଗୁଡ଼ି ସେ ଝଳଝଳିଆ ।

ଝଲମ, ବି. (ଦେଶଜ) ଦେଉଳ ପୀଢ଼ ବା ଗୃହମାନଙ୍କର ଯେଉଁ ଭାଗ ପଦାକୁ ବଳିଥାଏ ।

ଝଲମଲ, ବିଂ. (ଦେଶଜ) ଜକଜକ ବା ଉଜ୍ଜ୍ୱଳ । ଯଥା—

ହସୁ ଦଣେ ସୁନାଖିଲ ଝଲମଲ ଦନ୍ତେ । ଲ. ନ.

ଝଲମଲିଆ, ବିଂ. (ଦେଶଜ) କାନ୍ତିଯୁକ୍ତ । ଯଥା—

ସେହି ପରି ଝଲମଲିଆ ଶାଢ଼ୀ,
ପିନ୍ଧି ଯାଉଥିଲା ମୁହଁକୁ ମୋଡ଼ି ।

ଝଲସିବା, କ୍ରି. (ଦେଶଜ) ଚମକିବା; ଝଟକିବା ।

ଝଲସିପଡ଼ିବା, କ୍ରି. (ଦେଶଜ) ଆଖି ନିମୀଳିତ ହେବା; ଚମକି ପଡ଼ିବା ।

ଝଲସାଇବା, କ୍ରି. (ଦେଶଜ) ଅନ୍ୟ ମନକୁ ରଞ୍ଜିତ କରିବା; ଚମତ୍କୃତ କରିବା ।

ଝଳା, ବି. (ଦେଶଜ) ଝାଳିବା, ଧାତୁଖଣ୍ଡ-ଦ୍ୱୟକୁ ସଂଯୁକ୍ତ କରିବା; ଉଭୟ ପଦାର୍ଥର ଅନ୍ୟୋନ୍ୟ ସଂଯୋଗ ।

ଝଲି, ବି. (ଦେଶଜ) ଦୀପ୍ତି । ବିଂ. ଦୀପ୍ତ । ଯଥା—

ତରୁଣ କଦଳୀ ତରୁରୁ ହୋଇଛୁ
ଅରୁଣକଞ୍ଚା ଜାତ ଝଲି । ପ୍ରେ. ସୁ. ନି.

ଝଲିବା, କ୍ରି. (ଦେଶଜ) ସୁନ୍ଦର ଦିଶିବା; କାନ୍ତି ପ୍ରକାଶିତ କରିବା । ଯଥା—

ପୀତକର କାଳେ ଝଲୁଛି ଭୁବନ । ନ. କେ.

ଲାଗି ରହିବା । ଯଥା—

କଦା ଅରବନ୍ଦ ପାଶେ ଅଳିବୃନ୍ଦ
ରହେ ଅଙ୍ଗକୁ ଅଙ୍ଗ ଝଲି । ଉ. କ.

ଝଲ୍ଲକ, ବି. (ଝଲ୍ଲ = ଅନୁକରଣ ଶବ୍ଦ-କୈ = ଶବ୍ଦ କରିବା-ଅ) କାଂସ୍ୟନିର୍ମିତ ବାଦ୍ୟ-ବିଶେଷ।

ଝଲ୍ଲରୀ, ଝଲରୀ, } ବି. ସ୍ତ୍ରୀ. (ଝଲ୍ଲି-ଅନୁକରଣ ଶବ୍ଦ-ରା = ଗ୍ରହଣ କରିବା-ଅ, ଈ) ବାଦ୍ୟ-ବିଶେଷ, ହୁଡୁକ୍କ, ହୁଡୁକା।

ଝଷ, ଝଷ, ବି. ( ଝଷ୍ = ବଧ କରିବା-ଅ ) ମତ୍ସ୍ୟ; ତାପ; ବନ; ମୀନରାଶି।

ଝଷକେତନ, ଝଷକେତୁ, } ବି. (ଝଷ-କେତନ, କେତୁ) କନ୍ଦର୍ପ; ମୀନକେତନ, ମଦନ।

ଝସାଇବା, କ୍ରି. (ଦେଶଜ) ସାହସରେ ପଶିବା। ଯଥା—

ଝସାଇ ପଶିଲେ ଶ୍ରୀରାମଙ୍କ ଆଡ। ବି. ରାମାୟଣ।

ଝାଇଁ, ବି. (ଦେଶଜ) ମୂର୍ଚ୍ଛା। । ବିଂ. ଊତ୍ତ୍ର, ଉପ୍ର। ଯଥା—

ଗୃହଳ ଭଜଲ ଝାଇଁ,
ଝାଇଁପାଣିଖିଆ ବାଚ୍ଛୁର ଘୋଡ଼ା ଅସ୍ତ୍ର କରଦେଉ ନାହିଁ।

ଅଂ. ଅନୁକରଣ ଶବ୍ଦ। ଯଥା—

ବନଭୂମି ଝଙ୍କାରିଲା ଝାଇଁ ଝାଇଁ ରବେ। ଦ. ବି.

ଝାଇଁପଖାଳ, ବି. (ଦେଶଜ) ଗରମ ପଖାଳ।

ଝାଇଁମାରିବା, କ୍ରି. (ଦେଶଜ) ଢୋଳ ହେବା, ଝାଇଁ ଝାଇଁ ହେବା।

ଝାଇଁମୁଗ, ବି. (ଦେଶଜ) ଗ୍ରୀଷ୍ମଦିନରେ ଅମଳ ହେବା ମୁଗ, ଧଳାମୁଗ।

ଝାଇ, ବି. (ଦେଶଜ) ଜଡ଼ଆ ଗୁଡ଼ରେ ପାଗ ଧରିବା; ପୋଡ଼ିବା।

ଝାଉଁ, ଝାଉ, ବି. (ଝାବୁକ ଶବ୍ଦଜ) ବୃକ୍ଷ-ବିଶେଷ।

ଝାଉଁଳା, ବି. ( ଦେଶଜ ) ନୈବେଦ୍ୟକାର-ବିଶେଷ; ମଉଳିବା। ବିଂ. ମଉଳି ଥିବା।

ଝାଉଁଳି, ବିଂ. (ଦେଶଜ) ନସ୍ତେଜ।

ଝାଉଁଳିବା, କ୍ରି. (ଦେଶଜ) ମଉଳିବା। ବିଂ. ଯେ ମଉଳିଥାଏ। ଯଥା—

ଝାଉଁଳିବା ନବତମାଳ ରମା,
ଝିଙ୍କି ଆଣି ଅଙ୍ଗେ କଲଣି ଜମା। କ. ଚ. ଚ.

ଝାଙ୍କ, ବି. (ଦେଶଜ) ମତ୍ତତା; ବାତୁଳତା; ବଡ଼ ଟୋକାଇ ବା ଝଙ୍କା; ଡ଼ାଲ; ସମୂହ। ଯଥା—

ଗଜ ତୁରଙ୍ଗ ଶାଳପାଖେ,
କସ୍ତୂରୀ ମୃଗ ଝାଙ୍କେ ଝାଙ୍କେ। ଭ୍ର. ଦ. ଷ୍ଟ.

ଝାଙ୍କରା, ଝାଙ୍କଡ଼ା, ବିଂ. (ଦେଶଜ) ବିସ୍ତୃତ। ଯଥା—

ବୈତରଣୀ କୂଳେ ଝାଙ୍କଡ଼ା ହୋଇ ଲୋ
ଅଛଇ ଗୋଟିଏ ବର। ଉ. ଯା. ୧୮. ୮.

ଝାଙ୍କିବା, କ୍ରି. (ଦେଶଜ) ମାଦକଦ୍ରବ୍ୟ ଖାଇ ମତ୍ତ ହେବା; ଲୁଚ ଅନାଇବା। ଯଥା—

ଠାବେ ଠାବେ ଅଭ୍ରଖଣ୍ଡ ସ୍ୱର୍ଣ୍ଣକାନ୍ତ,
ଶିର ତୋଳ ଶୈଳ ଶିଖେ ଝାଙ୍କୁଥାନ୍ତ। ଚଳିବା। ଟାଣିବା। ଯଥା—

ପୁଣି ଅଧାଚନ୍ଦ୍ର ବାଣ ପେଷିଲା ଅସୁର,
କର୍ଣ୍ଣର ମୂଳଯାଏ ଝାଙ୍କିଲା ଧାଡକାର। ନୃ.ପୁ.ଚ.ଚ.

ଗଛ ପ୍ରଭୃତି ଦୋହଲାଇବା; ଅତର୍କିତଭାବରେ ଆକ୍ରମଣ କରିବା। ଯଥା—

ସେ ବୃକ୍ଷମୂଳେ ଟିକଏ ବିଶ୍ରାମନ୍ତ ବସି,
ଝାଙ୍କିଲା କାଳନିଦ୍ରା ଶ୍ରୀକୃଷ୍ଣ ଅଙ୍ଗେ ଆସି। ନୃ.ପୁ.ସ.ଚ.

ଝାଞ୍ଜ, ବି. ( ଝନଝନ ଶବ୍ଦଜ ) କରତାଳ; ମନ୍ଦିରାବିଶେଷ।

ଝାଞ୍ଜଷ୍ଟ, ବି. (ଦେଶଜ) ଏକପ୍ରକାର ଗୁଲୁଣି।

ଝାଞ୍ଜି, ଝାଞ୍ଜୀ, ବି. ସ୍ତ୍ରୀ. (ଦେଶଜ) ତାତ; ସନ୍ତାପ। ଯଥା—

ଝଡ଼ିବ ବଳ କୋମଳ ଗ୍ରୁଡରୁ,
ଝଷଧ୍ୱଜ ଝାଞ୍ଜି ପୀଡ଼ା ତାଡରୁ। କ. ଚ. ଚ.

ଝାଞ୍ଜିମୁଗ, ବି. (ଦେଶଜ) ଧଳାମୁଗ।

ଝାଞ୍ଜିରି, ବି. (ଦେଶଜ) ନାଳମୁହଁରେ ଦେବା ଲୋହପଟୀ।

ଝାଞ୍ଜିରାମଙ୍ଗଳା, ବି. ସ୍ତ୍ରୀ. (ଦେଶଜ) ଦେବୀ-ବିଶେଷ।

ଝାଞ୍ଜୀ, ବି. (ଦେଶଜ) ଗ୍ରୀଷ୍ମ, ଉଷ୍ଣପବନ, ତାତ।

ଝାଟ, ଝାଡ଼, ବି. (ଦେଶଜ) ନିକୁଞ୍ଜ।

ଝାଟପାଟ, ବି. (ଦେଶଜ) ଗୁଞ୍ଜୁଣିରେ ଝାଡ଼ିବା କମ୍ପା ଓଳାଇବା । ଯଥା—
ଝାଟପାଟ ଉଆଳ ରଖିବ ଭୂମ୍ଭ ପାଶେ । ନୃ.ପୂ.ଚ.ଭ.
ଝାଟି, ଝାଟୀ, ବି. (ଯଷ୍ଟି ଶବ୍ଦଜ) ବୃକ୍ଷର ସରୁ ଶାଖା; ବାଉଁଶକଣି ।
ଝାଟିମାଟି, ବି. (ଯଷ୍ଟି-ମୃତ୍ତିକା ଶବ୍ଦଜ) ଝାଟିର ବାଡ଼ ଦେଇ ତା ଉପରେ ମାଟି ଲେପି ଯେଉଁ କାନ୍ଥ ତିଆରି ହୁଏ ।
ଝାଟୁଆ, ବି. (ଦେଶଜ) ଗୁଞ୍ଜୁଣୀ । ଯଥା—
ସବୁ ପକାଇଦେଲା ଦୂରେ,
ଝାଟୁଆ ଧୂଳର ପ୍ରକାରେ । ଦା. ର.
ଗୁଞ୍ଜୁଣୀରେ ଝାଡ଼ିବା ଅଳିଆ ।
ଝାଡ଼, ବି. (ଦେଶଜ) ବଣ । ଯଥା—
ଝାଡ଼ବନୋଦଆ ହରି, ସଂକେତକଲୁ ଡ଼ରି । ବି.ଚି.ମ.
ଗୁଚ୍ଛ ବା କାନ୍ଧ; ଗଛ; ପରିଷ୍କାର । (ହିନ୍ଦୀ) କାଚନିର୍ମିତ ଆଲୋକାଧାର ।
ଝାଡ଼ଗୁରୁଡ଼, ବି. (ଦେଶଜ) ବଣଚୋଟାରେ ଯେଉଁ ଛୋଟ ଛୋଟ ଆମ୍ବ ହୁଏ ।
ଝାଡ଼ଣ, ବି. (ଦେଶଜ) ସମ୍ମାର୍ଜନୀ ।
ଝାଡ଼ବାସିନୀ, ବି. ସ୍ତ୍ରୀ. (ଝାଡ଼ = ବନ-ବାସିନୀ) ଦେବୀଙ୍କ ନାମବିଶେଷ । (ଝାଡ଼େଶ୍ୱରୀ ଶବ୍ଦ ଦେଖ ।)
ଝାଡ଼ା, ବି. (ହିନ୍ଦୀ) ମଳ; ମଳ ନିଃସରଣ ବା ଅତିସାର; ହଗଣା ।
ଝାଡ଼ାକଇ, ଝାଡ଼ାବାନ୍ତି, ବି. (ଦେଶଜ-ଝାଡ଼ା = ଅତିସାର-କଇ, ବାନ୍ତି) ଓଲଉଠା ରୋଗ । ଯଥା—
ଝାଡ଼ାକଇ ରୋଗେ ପାଣି ପଡ଼ୁଛ ହତାଶେ,
କେ ଯିବ ଔଷଧ ଦେନ ଆଉ ତାହା ପାଶେ । ଉ. ଭ୍ର.
ଝାଡ଼ି, ବି. (ଦେଶଜ) କ୍ଷୁଦ୍ର ବନ, ଜଙ୍ଗଲ ।
ଝାଡ଼ିବା, ଝାଡ଼ିଝୁଡ଼ିବା, କ୍ରି. (ଦେଶଜ) ମନ୍ତ୍ର-ପାଠ କରି ଭୂତାଦି ଛଡ଼ାଇବା । ଯଥା—
ବିଦେହ ପ୍ରେତ ଝାଡ଼ିବାକୁ
ଅନ୍ତରଗରୁଁ ତୋ ବାଣୀ ମନ୍ତ୍ରର । ବୈ.ବି.
ପରିଷ୍କାର କରିବା; ଗାଳିଦେବା; ଦୋହଲାଇ ଫଳାଦି ତଳେ ପଡ଼ିଲା ପରି କରିବା; କମ୍ପାଇବା, ଦୋହଲାଇବା । ଯଥା—
କାନ୍ଧ ଝାଡ଼ଇ ନାଡ ମାରି,
ଗଗନେ ପଡ଼ୁଅଛି ହରି । ଶ୍ରୀ. ଦ. ସ୍କ.
ଅସ୍ତବ୍ୟସ୍ତ କରିବା । ଯଥା —
କରଇ ନିବେଦନ ଧୀନସ୍ଥାନ ଅଜ୍ଞାନ
ଦଶା ଦେବାରୁ ସଦା ଝାଡ଼ ହେ ।
ଲୋ. ଜଣାଣ ।
ଝାଡ଼ୁ, ବି. (ଝଟୁକ ଶବ୍ଦଜ) ସଂମାର୍ଜନୀ, ଗୁଞ୍ଜୁଣୀ । କ୍ରି. ପରିଷ୍କାର କରୁ ।
ଝାଡ଼ୁଆ, ବିଂ. (ଦେଶଜ) ସମ୍ବଲପୁରରେ ବ୍ରାହ୍ମଣମାନଙ୍କର ଏକ ଶାଖା ।
ଝାଡ଼ପୁଡ଼, ଝାଡ଼ୁପୁଡ଼ୁ, କ୍ରି. ବିଂ. (ଦେଶଜ) ନିଃଶେଷ । ଯଥା—ସବୁ ଝାଡ଼ପୁଡ଼ ହୋଇଗଲା ଅର୍ଥାତ୍ ନିଃଶେଷ ହେଲା ।
ଝାଡ଼େଣୀ, ବି. (ଦେଶଜ) ଗାଳି, ଭର୍ତ୍ସନା ।
ଝାଡ଼େଶ୍ୱରୀ, ବି. ସ୍ତ୍ରୀ. (ଝାଡ଼-ଈଶ୍ୱରୀ) ଦେବୀଙ୍କ ନାମବିଶେଷ । ଯଥା—
ଝାଡ଼େଶ୍ୱରୀ ଝଟବଶୀ ଝାଡର ବାସିନୀ,
ଝଟଝୀ ଝଟନେଶୀ ଗୋ ଝଟକଦଶନୀ । ନୃ.ପୂ.ପ.ଭ.
ଝାଡି, କ୍ରି. ବିଂ. (ଝଟିତି ଶବ୍ଦଜ, ପ୍ରାକୃତ ଝଡ଼ିରୁ ଜାତ) ଶୀଘ୍ର । (ଏତେକ ଶବ୍ଦ ଦେଖ ।)
ଝାଡକା, ଝାଡକାର, } କ୍ରି. ବିଂ. (ଝଟିତି ଶବ୍ଦଜ) ଶୀଘ୍ର । ଯଥା—
ଶୁଣି ନାମ ଭ୍ରମ ହେଲା ଯେ ଝାଡକାରେ ଗୁଟୁ କଲେ ।
ବି. ଚି. ମ.
ଝାପସା, ଝାପ୍ସା, ବିଂ. (ଦେଶଜ) ଅସ୍ପଷ୍ଟ । (ଦୃଷ୍ଟି ସମ୍ବନ୍ଧରେ) ଜାଲଜାଲୁଆ ।
ଝାମ, ବି. (ଦେଶଜ) ଭ୍ରମ । ଯଥା—
କହୁ କହୁ କାମ ହୋଇଲା ଝାମ । ର. କ.
ଅଗ୍ନିର ତାତି; ଶଗଡ଼ ଚକର ଲୌହ-ପରିଧି; ଅଗ୍ନିପୂର୍ଣ୍ଣ ଗର୍ତ୍ତ ଅର୍ଥାତ୍ ପଣା-ସଂକ୍ରାନ୍ତିରେ ଯେଉଁ ଅଗ୍ନି ଉପରେ ଚାଲନ୍ତି । ଯଥା—
କାମ ଚଳଇଲା ସରଣୀ ଝାମରେ
ନାଗରୀ ଦୋଷୀ ବିଦେଶୀ । ଲା. ବି.

ଝାମମାରିବା, କ୍ରି. ଝୋଲମାରିବା, ମୂର୍ଚ୍ଛିତ ହେବା ।

ଝାମା, ବି. (ଦେଶଜ) ପୋଡ଼ା ଇଟା ।

ଝାମି, ବି. (ଦେଶଜ) ଏକପ୍ରକାର ସ୍ୱାଦୁଫଳ, ଗୁଡ଼ଲଆ ଫଳ ।

ଝାମୁ, ବି. (ଦେଶଜ) ଝାଉଁଗଛ ।

ଝାମ୍ପ, ବି. (ଝମ୍ପ ଶବ୍ଦଜ) ଲମ୍ଫ, କୁଦା; ମାଛ ଧରିବା ଯନ୍ତ୍ରବିଶେଷ; ଚଢ଼ିରା ଗଛ; ବର୍ଷା ସମୟରେ ମୁଣ୍ଡରେ ଦେବା ତାଳପତ୍ରର ଛତ୍ରବିଶେଷ; ବଡ଼ ଟୋକାଇ; ପକ୍ଷିମାନଙ୍କର ଗୋଡ଼ନଖଦ୍ୱାରା ଆକ୍ରମଣ । ଯଥା—

ଏତେ ବୋଲି ଚିଲପକ୍ଷି ଝାମ୍ପ ତାକୁ ଦେଲା,
ଦନାରୁ ଅଧିକ ଧରି ଚିରପକାଇଲା । ନା. ର. ଗୀ.

ଝାମ୍ପଲ, ବିଂ. ବିସ୍ତୃତ ବା ଚଢ଼ିରା ।

ଝାମ୍ପି, ବି. (ଦେଶଜ) ପତ୍ରନିର୍ମିତ ମସ୍ତକାବରଣ ।

ଝାମ୍ପିବା, କ୍ରି. (ଝମ୍ପ ଧାତୁଜ) ଉପରକୁ ହଠାତ୍ ଆକ୍ରମଣ କରିବା । ଯଥା—

ଅର୍ଜୁନ କୁରୁମୃଗମାନଙ୍କୁ ଯେଉଁକାଳେ,
ପଡ଼ିଲେ ସିଂହପ୍ରାୟେ ଝାମ୍ପି ଆସି ହେଲେ । କୃ. ଭା. ବି. ପ.

ପକ୍ଷିଆଦି ମନୁଷ୍ୟାଦିଙ୍କଠାରୁ ଅତର୍କିତଭାବରେ କୌଣସି ପଦାର୍ଥ ନେଇଯିବା ।

ଝାମ୍ପଡ଼ା, ଝାମ୍ପୁରା, ବିଂ. (ଦେଶଜ) ଯାହାର ମୁଣ୍ଡ ବା ମୁଣ୍ଡର ବାଳ ପ୍ରଭୃତି ଇତସ୍ତତଃ ବିସ୍ତୃତ, ଚଢ଼ିରା ବା ଛତରା ।

ଝାମ୍ପୁଲ, ବିଂ. (ଦେଶଜ) ବହୁ ଶାଖାପ୍ରଶାଖାଯୁକ୍ତ, ଚଢ଼ିରା ।

ଝାଳ, ବି. (ଝଳ ଶବ୍ଦଜ) ସ୍ୱେଦ । (ଦେଶଜ) ଭଙ୍ଗ ହେବା ପାତ୍ରାଦିର ପୁନଃସଂଯୋଗ ।

ଝାଳପାତିଆ, ବି. (ଦେଶଜ) ପାତ୍ରାଦି ଝାଳିବା ସମୟରେ ସଂଯୋଗ କରିବା ଧାତୁଖଣ୍ଡ ।

ଝାଲର, ଝାଲରି, ବି. (ଦେଶଜ) ଚନ୍ଦୁଆ ପ୍ରଭୃତିର ଚାରିଆଡ଼େ ଝୁଲୁଥିବା ବସ୍ତ୍ରବିଶେଷ; ମୟୂରର ବିସ୍ତୃତ ପୁଚ୍ଛ । ଯଥା—

ଚନ୍ଦ୍ରାତପ ତଳେ ଝୁଲିଇ ମଞ୍ଜୁଳ,
ଝାଲର ପରସ୍ପେ ପତ୍ର ସଙ୍ଗେ ଫୁଲ । ଚିଲିକା ।

ଝାଳିବା, କ୍ରି. (ଦେଶଜ) ଧାତୁନିର୍ମିତ ପାତ୍ର ଓ ଅଳଙ୍କାରାଦି ମରାମତି କରିବା ଏବଂ ଉଜ୍ଜ୍ୱଳ କରିବା; ଭିନ୍ନ ବସ୍ତୁକୁ ସଂଯୋଗ କରିବା । ଯଥା—

ଏ ଦେହ ମଣ୍ଡୁଛୁ ଅନ୍ତର ଭିତର
ସ୍ୱାର୍ଥ ବାନ୍ଧ କି ଝାଳିଲଣି । ବି. ଚ. ମ.

ଉଜ୍ଜ୍ୱଳ କରିବା ।

ଝାଲି, ବି. (ଦେଶଜ) ମୟୂର ପୁଚ୍ଛ ବା ସାଧାରଣ ପୁଚ୍ଛ; ଆଗର କିମ୍ବା ଅଡ଼ଙ୍ଗା । (ଏହି ଅର୍ଥ ବିଶେଷତଃ ଗଞ୍ଜାମରେ ବ୍ୟବହୃତ ।) ଝାଲର । ଯଥା—

ଶିରରେ ଶୋଭଇ ମୟୂରକଣ୍ଠୀ ଝାଲି । ସା. ଭା. ବି.

ଝାଳେଇବା, କ୍ରି. (ଦେଶଜ) ଘର୍ମଯୁକ୍ତ ହେବା ।

ଝାବୁକ, ଝାବୁ, ବି. ସଂ. ଝାଉଁ ଗଛ ।

ଝାସ, ବି. (ଦେଶଜ) ଅଗାଧ ଜଳାଦିରେ ପ୍ରାଣ ତ୍ୟାଗ କରିବା; ଅଗ୍ନିରେ ପ୍ରବେଶ । ଯଥା—

ସିନ୍ଧୁରେ ସିନ୍ଧୁରେ ଝାସ ଯୁବା ପାଞ୍ଚିଲେ । ପ୍ରେ ସୁ. ନି.

ଅଗ୍ନି ଓ ସୂର୍ଯ୍ୟଙ୍କ ତେଜ ବା ତାତି; କାନ୍ତି । ଯଥା—

ତନୁ ତୋ ନୀଳଘନ ଝାସ,
ବିଜୁଳିପ୍ରାୟ ପୀତବାସ । ଭା. ଦ. ସ୍କ.

ଝାସଦେବା, କ୍ରି. (ଦେଶଜ) ସହସା ପ୍ରବେଶିବା; ଆକ୍ରମଣ କରିବା । ଯଥା—

ରବି ପାଞ୍ଚଘଡ଼ି ଦେଢ଼ ପ୍ରହର ପ୍ରବେଶ,
ଧାମେ ବୃକୋଦର ଯେ ସମରେ ଦେବ ଝାସ । ସା. ଭା. ବି.

ଝାସିବା, କ୍ରି. (ଦେଶଜ) ଜଳାଦିରେ ପଶି ପ୍ରାଣତ୍ୟାଗ କରିବା ।

ଝିଁଝିଁ, ଅଂ. (ଦେଶଜ) ଅନୁକରଣ ଶବ୍ଦ ।

ଝିଅ, ଝିଉଅ, ବି. ସ୍ତ୍ରୀ. (ଦେଶଜ, ପ୍ରାକୃତ ଧୀଆ ଶବ୍ଦରୁ ଜାତ) ପୁତ୍ରୀ, କନ୍ୟା । ଯଥା—

ଶରଣ ପଶୁଛି ଦୁଃଖି ଝିଅକୁ ମା ରଖ ଶ୍ରୀଚରଣ ତଳେ । ପାଞ୍ଚାଳୀ ।

ଝିଅଝିଆଣି, ବି. ସ୍ତ୍ରୀ. (ଦେଶଜ) କନ୍ୟା ।

ଝିଆରୀ, ବି. ସ୍ତ୍ରୀ. ( ଦେଶଜ ) ଭ୍ରାତୃଷ୍ପୁତ୍ରୀ ଅର୍ଥାତ୍ ସାନ ଓ ବଡ଼ ଭାଇର ଝିଅ ।

ଝିଆରୀଜୋଇଁ, ବି. ଝିଆରୀର ସ୍ୱାମୀ ।

ଝିକା, ବି. ( ଦେଶଜ ) ସବଳେ ଆକର୍ଷଣ କରିବା ।

ଝିକିବା, କ୍ରି. (ଦେଶଜ) ସବଳେ ଆକର୍ଷଣ କରିବା । ଯଥା—

ନରେ ସ୍ୱର୍ଗେ ଟେକିଦେବାକୁ ଅମରେ
ମର୍ତ୍ତ୍ୟେ ଆଣିବାକୁ ଝିକ । ଯ. କେ.

ଝିଙ୍କ, ବି. ( ଦେଶଜ ) ବନ୍ୟଜନ୍ତୁବିଶେଷ, ପକ୍ଷିବିଶେଷ । ଯଥା—

ଶୁଭୁଅଛି ନଇକୂଳରେ ଝିଙ୍କପକ୍ଷୀ ସ୍ୱନ । ବ. ଗ୍ର.

ଝିଙ୍କକାଠି, ବି. (ଦେଶଜ) ଝିଙ୍କପକ୍ଷୀ ବା ପଶୁର ଦେହରେ ଥିବା କାଠି । ଏହା ପୋଥିରେ ଲାଗେ ଓ ସ୍ତ୍ରୀମାନଙ୍କ କେଶର ଆଭରଣ ସ୍ୱରୂପ ବ୍ୟବହୃତ ହୁଏ ।

ଝିଙ୍କର, ବି. (ଦେଶଜ) ଘରଚୁଆଣି କରିବା ଖପରି; ବନ୍ୟଜନ୍ତୁବିଶେଷ ଅର୍ଥାତ୍ ଝିଙ୍କ । (ଶାଳେହା ଶବ୍ଦ ଦେଖ ।) ଭଙ୍ଗାହାଣ୍ଡି ଖଣ୍ଡ ।

ଝିଙ୍କା, ବି. (ଦେଶଜ) ଚୁଲିର ଉପରେ ଥିବା ଗୋବ କମ୍ବା ସ୍ତୂପ, ଯାହା ଉପରେ ହାଣ୍ଡି ବସେ । ସ୍ତ୍ରୀ ମସ୍ତକାଳଙ୍କାରବିଶେଷ; ଓଟରା କମ୍ବା ସବଳେ ଆକର୍ଷଣ । କ୍ରି. ଆକର୍ଷଣ କରାଯିବା; ଉଣା ।

ଝିଙ୍କାଝିଙ୍କି, ବି. ( ଦେଶଜ ) ଓଟରାଓଟରି । ଯଥା—

ସେ କଠିନ ଝିଙ୍କାଝିଙ୍କିରୁ ନିସ୍ତାର,
ଲଭି ଲାଗି ହୁଅ ଅଗ୍ରୁ ହୁସିଆର । ଦ. ବା.

ଝିଙ୍କାରି, ବି. (ଦେଶଜ) ଏକପ୍ରକାର ପୋକ ।

ଝିଙ୍କିବା, କ୍ରି. (ଦେଶଜ) ସବଳେ ଆକର୍ଷଣ କରିବା । ଯଥା—

ଝଗଡ଼ା କରି ଅତନୁ, ଝିଙ୍କିଛି କୁସୁମଧନୁ । ବ. ଚ. ମ.

ଉଣା କରିବା ।

ଝିଙ୍ଗାସ, } ବି. (ଧିକ୍‌ଭାଷଣ ଶବ୍ଦଜ) କୁବଚନ,
ଧିଙ୍ଗାସ, } ଭର୍ତ୍ସନା । ଯଥା—

ସହଦେବଙ୍କୁ ବୋଲେ କୁମାରପୁଙ୍ଗବ ବସ,
ହୃଦରେ କିମ୍ପା ବହ୍ନି ବୋଇଲ ଏ ଝିଙ୍ଗାସ । ସା. ଭା. ଆ.

ଝିଙ୍ଗାସିବା, କ୍ରି. (ଦେଶଜ) ଭର୍ତ୍ସନା କରିବା । ଯଥା—

ମାଣେ ତଣ୍ଡୁଳ ପ୍ରକାଶିଲେ,
ସକଳ ଲୋକେ ଝିଙ୍ଗାସିଲେ । ଦା. ର.

ଝିଞ୍ଜାରିବା, କ୍ରି. (ଦେଶଜ) ସାରହୀନ କରିବା; ପୋକ ଲୁଗା କାଟିବା; ଘୁଣ ଓ ଉଇ ଲାଗି ନଷ୍ଟ ହେବା; ବିଦାରିବା । ବିଂ. ଅସାର ।

ଝିଞ୍ଜିରି, ବି. (ଦେଶଜ) ଶିକୁଳି ।

ଝିଞ୍ଜିରିପୋଲ, ବି. ( ଦେଶଜ ) ଶିକୁଳିରେ ଲଟକାଇ ଯେଉଁ ପୋଲ (Bridge) ତିଆରି ହୋଇଥାଏ ।

ଝିଟପିଟ, ଝିଟିପିଟି, ଝିଣ୍ଟିପିଟି, } ବି. (ଦେଶଜ) ଗୃହଗୋଧିକା; ଗୃହଦ୍ୱାରର ନିମ୍ନସ୍ଥ କାଷ୍ଠଫଳକ; ଦଣ୍ଡାରେ ଯୁକ୍ତଥିବା ସାନ କାଷ୍ଠଖଣ୍ଡମାନ ।

ଝିଟିକା, ଝିଣ୍ଟିକା, ବି. ସ୍ତ୍ରୀ. (ଦେଶଜ) ପତଙ୍ଗବିଶେଷ । ଯଥା—

ପିଲାଧନେ ଈଷିକା କାଣ୍ଡଟିଏ ନେଇ,
ଶୂଳ ଦେଲ ତହିଁ ଝିଟିକାଟିଏ ମୁହିଁ । କୃ. ଭା. ଆ ପ.

ଝିଣ୍ଟି, ବି. (ଦେଶଜ) ଲତାବିଶେଷ ।

ଝିଣଝିଣ, ବି. (ଦେଶଜ) ସମୟେ ସମୟେ ଗୋଡ଼ ପ୍ରଭୃତିରେ ଏପରି ଏକ ବିକାର ହୁଏ ଯେ ଛୁଇଁଲେ କାଟେ ନାହିଁ ।

ଝିନ, ଝୀନ, ବିଂ. (କ୍ଷୀଣ ଶବ୍ଦଜ, ପ୍ରାକୃତ ଝୀଣ ଶବ୍ଦଜାତ) ପାତଳ । (ଝଟକ ଶବ୍ଦ ଦେଖ ।)

ଝିପିଝିପି, ଅଂ. ( ଦେଶଜ ) କ୍ଷୁଦ୍ର କ୍ଷୁଦ୍ର ଟୋପାରେ ବର୍ଷା ହେବା; ବର୍ଷା ପ୍ରତି ପ୍ରୟୋଗ ହେବା ଅନୁକରଣ ଶବ୍ଦ । ଯଥା—

ଝିପି ଝିପି ପଡ଼େ   ବରଷାର ବାରି
ସିରି ସିରି ବହେ ବାୟୁ । ଭ. ସା ।

ଝିମା, ବି. (ଦେଶଜ) ଏକପ୍ରକାର ବାତ ବିକାର ।

ଝିମାଣି, ଝିମିଚି, ଝିମିଣି, } ବି. (ଦେଶଜ) ଖେଳବିଶେଷ ଅର୍ଥାତ୍ ଡୁଡୁ ଖେଳ । ଯଥା—

ଇନ୍ଦ୍ରପ୍ରସ୍ଥ ଆଖଡ଼ାରେ କୁତୂହଳ କୃତେ,
ରସେ ଭିଆଇଲେ ଝିମିଚି ଖେଳ ପକ୍ଷାନ୍ତେ । ସା.ଭା.ଆ.ପ.

ଝିମାଣି, ବି. (ଦେଶଜ) ଝିମିଶାଳ ଅର୍ଥାତ୍ ଶସ୍ତ୍ର ତିଆର କରିବା ଶାଳାର ଅଗ୍ନି । ଯଥା—

ଝିମାଣି ଅଗ୍ନି ଆଣିଲ କରେ ସେହୁ କାଳ । ସା.ଭା.ଆ.

ଝିମିଝିମି, ଅ°. (ଝିମ୍ଝିମ ଶବ୍ଦଜ) ଅଙ୍ଗବିଶେଷରେ ରକ୍ତସଞ୍ଚାଳନର ବ୍ୟାଘାତ ହେଲେ ଯେଉଁ ଯନ୍ତ୍ରଣା ଅନୁଭୂତ ହୁଏ । ଯଥା—

ଝିମିଝିମି କଳେବର ଯେ,
ଝାଳ ବହେ ଝର ଝର । ବି. ଚ. ମ.

ଅନୁକରଣ ଶବ୍ଦବିଶେଷ । ଯଥା—

ଝିମିଝିମି ଢମିଢମି ଧାଢଙ୍ଗି ଧାଢଙ୍ଗି,
ଏରୂପେ କର ପାଦ ବୁଲନ୍ତ କରି ଭଙ୍ଗୀ । ନୃ.ପୂ.ଦ୍ୱି.ଚ.

ଝିମିଟ, ବି. (ଦେଶଜ) ମୁହୂର୍ତ୍ତିକ । ଯଥା—

ଝଗଡ଼ା ମାନ ହେଲା ହେ ଶ୍ୟାମ,
ଝିମିଟ ହେବାକୁ ସହସ୍ରେ ଯାମ । କ. ଚ. ଚ.

ଝିମିରି, ବି. (ଦେଶଜ) ଶସ୍ତ୍ରାଦି ଯେ ତିଆର କରନ୍ତି । ଯଥା—

ଝିମିରିମାରଣାମାନେ ଅଛନ୍ତି ବାହୁଣାରେ । ସା.ଭା.ସ.

ଝିମିଶାଳ, ବି. (ଦେଶଜ) ଶସ୍ତ୍ର ତିଆର କରିବା ଶାଳା । ଯଥା—

ପାଞ୍ଚଶ ଲକ୍ଷ ଯେ ଉଠିଅଛି ଝିମିଶାଳ,
ଲୌହକର୍ମରେ ଘଟଣ କରିବେ ସକଳ । ସା.ଭା.ସ.

ଝିଲ, ବି. (ଦେଶଜ) ଜଳପାଟ; ଦହ ।

ଝିଲମିଲ, ଝିଲମିଲି, ବି. (ଦେଶଜ) କବାଟବିଶେଷ ।

ଝିଲି, ଝିଲ୍ଲି, ବି. (ଦେଶଜ) ଏକପ୍ରକାର ଖଜା, ଘୃତପକ୍ୱ ପିଷ୍ଟକବିଶେଷ ।

ଝିଲପି, ଝିଲିପିଲି, ଝୁଲପି, } ବି. (ଦେଶଜ) କର୍ଣ୍ଣମୂଳକୁ ଲମ୍ବିବା ବାଳ ।

ଝିଲିପି, ବି. (ଦେଶଜ) ପିଷ୍ଟକବିଶେଷ ।

ଝିଲମିଲି, ଝିଲମିଲିକା, } ବି. (ଦେଶଜ) ଜୁଳୁଜୁଳିଆ ପୋକ । ଯଥା—

ଏକା ଅଗ୍ନି ଧାପରେ ଜଳବେ ଯେବେ ଗ୍ରହେ,
କ ହେବ ତା ପାଶେ ଥାଇ ଝିଲ୍‌ମିଲ୍ ଶତେ ।
ନ. ପୁ. ପ୍ର. ଚ.

କବାଟବିଶେଷ; ସ୍ତ୍ରୀମାନଙ୍କ ସୀମନ୍ତଭୂଷଣବିଶେଷ । ଯଥା—

ଝିଲ୍‌ମିଲ୍ ପାନପତ୍ରୀରେ ଅତିଶୋଭନ,
ମାରି ମଙ୍ଗଳ ପଲ୍ଲବତୋରଣ ପତ୍ର । ଲ. ବ.

ଝିଲ୍ଲିକା, ଝିଲ୍ଲୀ, ବି. ସ୍ତ୍ରୀ. (ଝିଲ୍ଲ-ଇକ-ଆ, ଈ) ପତଙ୍ଗବିଶେଷ, ଝିଙ୍କାରି । ଯଥା—

ଦିଗଦିଗନ୍ତରେ ଶୁଭେ ଝିଲ୍ଲୀସ୍ୱନ,
କିବା ସେ ଯାମିନୀ ନୂପୁରକଙ୍କଣ । ନ. କେ.

ଝୁଙ୍କ, ଝୁଙ୍କି, ବି°. (ଦେଶଜ) ବିହ୍ୱଳ । ବି. ମାଦକ ପଦାର୍ଥର ପ୍ରଭାବ । ଯଥା—

ନିଶା ଝୁଙ୍କେ ହଜିଯାଏ ମାନବ ଚେତନା,
ପ୍ରୀତିରସେ ବୁଡ଼ିଯାଏ ସମାଜମାନନା । ଉ.ସା ୧୮.

ନିଶା; ଘୂର; ନତ ହେବା ।

ଝୁଙ୍କିବା, କ୍ରି. (ଦେଶଜ) ମାଦକଦ୍ରବ୍ୟ ଖାଇ ଢଳିବା; ନତ ହେବା । ଯଥା—

ଶିଗ୍‌ଲଶରୀର ବସ୍ତ୍ରୋଧର୍ମେ ତାର
ଆଗକୁ ପଡ଼ୁଛି ଝୁଙ୍କି । ପାବନ୍ତି ।

ଝୁଞ୍ଜିଳ, ବି. (ଦେଶଜ) ବାଦ୍ୟବିଶେଷ । ଯଥା—

ବାଜିଲି ବଜଘୋଷ ଝୁଞ୍ଜିଲ ପଖାଉଜ । ନୃ.ପୂ.ଦ୍ୱି.ଚ.

ଝୁଟା, ବି°. (ଯାବନିକ) ମିଥ୍ୟା; କୃତ୍ରିମ; ଅଇଣ୍ଠା ।

ଝୁଟି, ବି. (ଦେଶଜ) ନାନାବର୍ଣ୍ଣରେ ଲେଖିବା ଚିତା ବା ଚିତ୍ର; ଚିତ୍ରବଲ୍ଲୀ ।

ଝୁଣା, ବି. (ଧୂନା ବା ଧୂନକ ଶବ୍ଦଜ) ଶାଳଗଛର ନିର୍ଯ୍ୟାସ; ଦନ୍ତଦ୍ୱାରା ସବଳେ ଆଘାତ କରିବା; ଶୁଷ୍କ ନଡ଼ିଆ ।

ଝୁଣିବା, କ୍ରି. (ଦେଶଜ) ରକ୍ତଶୋଷଣପୂର୍ବକ କାମୁଡ଼ିବା ବା ଚୁଚୁମିବା । ଯଥା—

ପାଞ୍ଚଟା ମୁଣ୍ଡ ଥିବା ସର୍ପପ୍ରାୟେ ହୋଇ,
ଶୁଣି ଯୁଦ୍ଧ କଲେ ଦୁହେଁ କୋପ ବହି । କୃ.ଭା.ବ.ପ.

ଝିଙ୍କିବା । ଯଥା—

କେ ପେ ରାଣୀର କେଶ ଝୁଣିଲ ନୃପମଣି । ସା.ଭା.ଆ.

ମସ୍ତକବାଚକ ଶବ୍ଦ ସହିତ—କମ୍ପିବା । ଯଥା—

ଅତି କାନ୍ଦର କଥା ଶୁଣି,
ବେଗେ ଉଠିଲ ଶିର ଝୁଣି । ଭା. ଦ. ସ୍କ.

ଝୁଣୁଝୁଣିଆ, ବି. (ଦେଶଜ) ଗୁଳ୍ମବିଶେଷ ।
ଝୁଣୁଝୁଣୁ, ଅଂ. (ଦେଶଜ) ଶବ୍ଦାନୁକରଣ-ବିଶେଷ ।
ଝୁଣ୍ଟା, ବି. (ଝୁଣ୍ଟ ଶବ୍ଦଜ) ଅକାଣ୍ଡ ବୃକ୍ଷ; ଅନ୍ୟର ଆକ୍ରମଣରୁ ରକ୍ଷା ପାଇବା ଉଦ୍ଦେଶ୍ୟରେ ମହଦ୍‌ବ୍ୟକ୍ତିଙ୍କ ନାମରେ ଗଣ ପକାଇବା; ଚାଲୁ ଚାଲୁ କୌଣସି କଠିନ ପଦାର୍ଥରେ ପାଦ ହାବୁଡିବା ।
ଝୁଣ୍ଟାମାରିବା, କ୍ରି. (ଦେଶଜ) ଅନ୍ୟର ଆକ୍ରମଣରୁ ରକ୍ଷା ପାଇବା ଉଦ୍ଦେଶ୍ୟରେ ମହଦ୍‌ବ୍ୟକ୍ତିଙ୍କ ନାମରେ ଗଣ ପକାଇବା ।
ଝୁଣ୍ଟିଆ, ବି. ( ଦେଶଜ ) ସ୍ତ୍ରୀ ପାଦାଙ୍ଗୁଳିର ଅଳଂକାରବିଶେଷ । ଯଥା—
ଝିଲ୍ଲୀ ଡାକ କର୍ଣ୍ଣେ ଶୁଣି,
ଝୁଣ୍ଟିଆ ପଦ୍ମସ୍ତେ ମଣି । ବି. ଚ. ମ.
ଝୁଣ୍ଟିବା, କ୍ରି. (ଦେଶଜ) ଚାଲୁ ଚାଲୁ କୌଣସି କଠିନ ପଦାର୍ଥରେ ପାଦାଙ୍ଗୁଳି ଆଘାତ ପାଇବା ।
ଝୁପଡ଼ି, ବି. (ଦେଶଜ) କୁଡ଼ିଆ ।
ଝୁମା, ବି. (ଦେଶଜ) ମୂର୍ଚ୍ଛା, ଭ୍ରମ; ନିଶା ଖୋଳରେ ଟଳିବା ।
ଝୁମିବା, ଝୁମାଇବା, କ୍ରି. (ଦେଶଜ) ମୂର୍ଚ୍ଛା ବା ଭ୍ରମ ପାଇବା । ଯଥା—
ସେ ସକାଶୁଁ ଖ୍ୟାତ ରଥର କୁବର,
ଧରି ଝୁମି ରହିଲେ ନ କରି ସମର । କୃ. ଖ. ବି.
ଝୁମୁକା, ବି. (ଦେଶଜ) କାଷ୍ଠନିର୍ମିତ ଖେଳନା; ସ୍ତ୍ରୀ କର୍ଣ୍ଣଭୂଷଣବିଶେଷ; ବୃକ୍ଷବିଶେଷ ।
ଝୁମୁକ, ବି. (ଦେଶଜ) ନାଚିବା ସମୟରେ ଗୋଡ଼ରେ ବାନ୍ଧିବା ଘାଗୁଡ଼ିମାଳ । ଯଥା—
ଏଥେ ଗରବ ତୋର ଏଡ଼େ,
ଝୁମୁକ ବାନ୍ଧିଅଛୁ ଗୋଡ଼େ । ଦା. ର.
ଝୁମୁକକଠାଉ, ବି. ( ଦେଶଜ ) ଯେଉଁ କଠାଉରେ ଘାଗୁଡ଼ି ଲାଗିଥିବାରୁ ଚାଲିବା ସମୟରେ ଝୁଣୁ ଝୁଣୁ ଶବ୍ଦ ହୁଏ ।
ଝୁମୁଝୁମୁ, ଝୁମ୍‌ଝୁମ୍, ଅଂ. ( ଦେଶଜ ) ଅଳଙ୍କାରାଦିର ମଧୁର ଅନୁକରଣ ଶବ୍ଦ । ଯଥା—
ବାଲା ଅଳତା ଝୁମୁଝୁମୁ ସ୍ୱନିତ । ବୈ. ବି.
ଝୁମ୍ପା, ବି. (ଦେଶଜ) ଫୁଲ; ଗୁଚ୍ଛ ବା ଥୋପା; କେଶ ବନ୍ଧନ ନିମିତ୍ତ ଯେଉଁ ପାଟଫୁଲ ହୁଏ ତାହାର ସୀମାସ୍ଥିତ ରଞ୍ଜିତ ଗ୍ରନ୍ଥି । ଯଥା—
ଝିଙ୍କି ସଜଡ଼ା କବରୀ ଯେ, ଝୁମ୍ପାଫୁଲ ପ୍ରଭେ କରି ।
ଝୁମ୍ପି, ବି. (ଦେଶଜ) ସ୍ତ୍ରୀ କର୍ଣ୍ଣାଳଙ୍କାରବିଶେଷ; ଜୁଡ଼ାଲମ୍ବିତ ଭୂଷଣବିଶେଷ; ଫୁଲ; କପାଳ ଉପରକୁ ଲମ୍ବିଥିବା କ୍ଷୁଦ୍ର କ୍ଷୁଦ୍ର କେଶ; କେଶ ବନ୍ଧନ ନିମିତ୍ତ ଯେଉଁ ପାଟଫୁଲ ହୁଏ ତାହାର ସୀମାସ୍ଥିତ ଗ୍ରନ୍ଥି । ଯଥା—
ତାର ଚନ୍ଦ୍ର ଝୁମ୍ପି ଖଞ୍ଜିଲେ,
ଖଞ୍ଜିଲେ କି ଅବା ମନ ରଞ୍ଜିଲେ । ଲ. ବି.
ଝୁମ୍ପୁଡ଼ି, ବି. (ଦେଶଜ) ଗୁଳ୍ମବିଶେଷ; କୁଡ଼ିଆ ଘର; କ୍ଷୁଦ୍ର ବୁଦା ବା କ୍ଷୁଦ୍ର ଗୁଳ୍ମ ।
ଝୁରା, ବି. ( ଧୁରା ଶବ୍ଦଜ ପ୍ରାକୃତ ) ଶଗଡ଼ର ଜୁଆଳି, ଯାନାଗ୍ରସ୍ଥିତ ସଚ୍ଛିଦ୍ର ପ୍ରାନ୍ତ ଦାରୁ-ବିଶେଷ; ଚୂନା; ଗୁଣ୍ଡିଆ; ଝୁରିବା; ଶଗଡ଼ ଜୁଆଳିକି ଯେଉଁ ଚମଡ଼ାଦଉଡ଼ିରେ ବାନ୍ଧନ୍ତି ସେ ଦଉଡ଼ିର ନାମ ଝୁରା; କତା ଦଉଡ଼ି ହେଲେ ଗତା କହନ୍ତି ।
ଝୁରି, ବି. (ଦେଶଜ) ସାନ ଚୁଲିଜାଳ କାଠ । (ଗଡ଼ଜାତ) ସାନ ଗଛ; ଚୂନା ।
ଝୁରିବା, କ୍ରି. ( ଦେଶଜ ) ପ୍ରିୟ ବ୍ୟକ୍ତିର ବିରହରେ ତାହାର ଗୁଣ ସ୍ମରଣ କରି ଖେଦ ଲଭିବା । ଯଥା—
ଏବେ ମରୁଅଛୁ ଝୁରି,
ଦରିଦ୍ର ରତନ ପାଇ ହରାଇଲା ପରି । ପ୍ରେ.ସୁ.ନି.
ଝୁଲ, ବି. (ଦେଶଜ) ଅଗ୍ନିକଣା; ହସ୍ତି ଉପରେ ପକାଇବା ଆସ୍ତରଣ; ଘରର ଅଳନ୍ଧୁ; ଯାହା ଝୁଲୁଅଛି; ମଯୂରାଦିର ବର୍ହ । ଯଥା—
ଅଧି ଶୋଭା ଶୋହୁଛି ମଯୂର ଝୁଲ ଯେମନ୍ତ । ଲ. ବି.

ଝୁଲଣ, ବ. (ଦୋଳନ ଶବ୍ଦଜ) ଶ୍ରାବଣ ଶୁକ୍ଲ ଦଶମୀଠାରୁ ପୂର୍ଣ୍ଣିମା ପର୍ଯ୍ୟନ୍ତ ହେବା ଶ୍ରୀକୃଷ୍ଣଙ୍କ ଉତ୍ସବ; ଆନ୍ଦୋଳନ ।

ଝୁଲଣା, ବ. ( ଦୋଳନ ଶବ୍ଦଜ ) ଦୋଳୀ । ଯଥା—

ଝୁଲଣା ରାଧା କୃଷ୍ଣଙ୍କର,
ଝୁଲାଇ ଦେବ କ ଏ ପର୍ଣ୍ଣ ବକ
ଭାବେ ସାମନ୍ତସିଂହାର । ବ. ଚ. ମ.

ଝୁଲ୍, ବ. (ଦେଶଜ) ଲଟକାଇବା; ଝୁଲିବା; ସଙ୍ଗୀତର ଏକପ୍ରକାର ତାଳ; ଏକପ୍ରକାର ଧାନ ।

ଝୁଲାଇବା, କ୍ରି. (ଦୁଲ୍ ଧାତୁଜ) ଦୋହଲାଇବା । ଯଥା—

ପଦ୍ମଶ୍ରିବକ୍ଷସ୍ଥ କଲେ ଝୁଲାଇ ଝୁଲାଇ । କୋ. ବ୍ର. ସୁ.

ଓହଳବା; ବାନ୍ଧ ଲମ୍ବାଇବା । ଯଥା—

ସେ ବୃକ୍ଷ ଡ଼ାଳରେ ଝୁଲାଇଛୁ ଏକ ଶବ,
ସତ୍ୱର ଯାଅ ତାହାକୁ ଏଠାକୁ ଆଣିବ । ବେ. ପ.

ଝୁଲି, ବ. (ଦେଶଜ) ବୈଷ୍ଣବମାନଙ୍କର ଜପମାଳା ରଖିବା ମୁଣା; ଖନ୍ଦା ।

ଝୁଲିବା, କ୍ରି . (ଦୁଲ୍ ଧାତୁଜ) ତଳକୁ ଓହୋଳ ଦୋହଲିବା; ଦୋହଲିବା । ଯଥା—

ମନ୍ଦାନିଳେ ଝୁଲୁଅଛୁ ସିଂହାସନ । ନ. କେ.

ଝେବ, ଝେବା, ଝୋବ, ଝୋବା, ଝୋଆ, } ବ. (ଦୋହ ଶବ୍ଦଜ) କ୍ଷୁଦ୍ର କଳସି ବା ଦୋହନପାତ୍ର ।

ଝୋଟ, ବ. (ଦେଶଜ) ନଳିତା ବା କାଉଁରିଆ ନାମକ ଗୁଳ୍ମଭିତରୁ ନିର୍ଗତ ସୂତ୍ରବତ୍ ପଦାର୍ଥ ।

ଝୋଟି, ଝୁଟି, ବ. (ଦେଶଜ) ମୁରୁଜରେ ବା ପିଠୋଉରେ ଦେବା ଚିତା ବା ଚିତ୍ର । ଯଥା—

ଏତେ ବୋଲି କନ୍ୟାଏ ବ୍ରତ ଉତ୍ସବ କଲେ,
ଯାବତ ପୁରେ ବିଷ୍ଣୁ ପ୍ରତିମା ଝୋଟି ଦେଲେ ।
ନୃ. ପୁ. ଭୃ. ଡ.

ଝୋଁପ, ଝୋପ, ବ. (କ୍ଷୁପ୍ ଶବ୍ଦଜ) ବୁଦା, କ୍ଷୁଦ୍ର ଗଛ ।

ଝୋଳ, ବ. (ଦେଶଜ) ଅଣ, ଭଅଣର ପାଣି ।

ଝୋଲ୍, ବ. (ଦେଶଜ) ଏକପ୍ରକାର ଯାନ; ବଡ଼ ଥାଳିଆ; ପାତଳା ଗୁଦର । ଯଥା—

କୁସୁମ ପାଖୁଡ଼ା ବଞ୍ଚି ଝୋଲ୍ ପକାଇ । ର. କ.

ମୁଣି । ଯଥା —

ଗୋଧଡ଼ି ଧର୍ମ ଆଗ୍ରେ କର,
ଜ୍ଞାନଗୋଧଡ଼ି ଝୋଲ୍ ଧର । ଦା. ର.

ଝୋଲ୍ମାରିବା, କ୍ରି. ( ଦେଶଜ ) ଅଚେତନ ହେବା, ଭ୍ରମ ଜାତ ହେବା । ଯଥା—

ଝଲ ପଞ୍ଚାଳୀ ଝଟକେ ନାହିଁ କ,
ଝୋଲ୍ ମାରଲ ତୁମ୍ଭଙ୍କୁ କାହିଁକ ? କ. ଚ. ଚ.

ଝୋଲ୍ମରା, ବ. (ଦେଶଜ) ଅଚେତନ, ଭ୍ରମ ।

ଝୋଲ, ଝୋଲି, ବ. (ଦେଶଜ) ମୁଣା । ଯଥା—

କଙ୍ଗାଳୀ ବରତଥାଳୀ ସେ ମୋର ତ
ନାମ ଗଳାର ତ ଦୁଃଖ ଝୋଲ । ବ.ଚ.ମ.



ଞ, ବ୍ୟଞ୍ଜନମାଳାର ଦଶମ ବର୍ଣ୍ଣ । ବ. ଗାୟନ; ଗାୟକ; ଘର୍ଘରଧ୍ୱନି; ବଳବର୍ଦ୍ଧ; ଶୁକ୍ର; ଯୋଗୀ; ଶବ୍ଦ । ବଂ. ସ୍ୱଧର୍ମଭ୍ରଷ୍ଟ; କ୍ରୂର ।



ଟ, ବ୍ୟଞ୍ଜନମାଳାର ଏକାଦଶ ବର୍ଣ୍ଣ । ବ. (ଟକ୍-ଅ) ଶବ୍ଦ; ପାଦ; ଶିବ; ବାମନ; ଟଙ୍କାରଧ୍ୱନି; କରଙ୍କ । ବଂ. ତ୍ରିଭୁବନ-ବିଖ୍ୟାତ ।

ଟକ, ବ. (ଦେଶଜ) ଖାଇବା ଇଚ୍ଛା; ଅମ୍ଳରସ ବା ଖଟା ।

ଠକଠକ, ବଂ. (ଦେଶଜ) ଚଞ୍ଚଳ; ବ୍ରଣର ବେଦନା; ଘାତଦ୍ରବ୍ୟ ଫୁଟିବା ଶବ୍ଦବିଶେଷ।

ଠକଠକା, ବଂ. (ଦେଶଜ) ଲୋଭୀ; ଲାଳସାଯୁକ୍ତ; ତରତରିଆ ।

ଠକମକ, ବଂ. (ଦେଶଜ) ଧ୍ୱନିଯୁକ୍ତ । ଯଥା—

ବନସ୍ତ ଠକମକ ଲୋ କଏ ସେ ଭାଙ୍ଗଇ ଜାଲ ।

ଅଂ. ଶବ୍ଦର ଅନୁକରଣବିଶେଷ ।

ଠକମକ, ଠକରମକର, } ଅଂ. (ଦେଶଜ) ଘାତ ପ୍ରଭୃତି ଫୁଟିବାର ଅନୁକରଣ ଶବ୍ଦ ।

ଠକ ଠକ, ଠକା ଠକ } ବି. (ଦେଶଜ) ଅନ୍ୟୋନ୍ୟରେ ଆକ୍ଷେପ କରିବା; ଦୁଇ ପକ୍ଷ ମଧ୍ୟରେ କନ୍ଦ ବା ଜଗଡ଼ା । ଯଥା—

ପଦ୍ମପଟରେ ଛନ୍ଦି ଠକାଠକ ହୋଇ,

ବନ୍ଧାବନ୍ଧ ହେଲେ ଦୁହେଁ ରୋଷ ବହି । କୃ. ଭ. କ.

ଠକ୍କର, ବି. (ଦେଶଜ) ବାଜିମାରିବା ଅର୍ଥାତ୍ ଧକାକରିବା; ସମକକ୍ଷତା; ପ୍ରତିଯୋଗିତା; ଠୋକର ଅର୍ଥାତ୍ ଆଘାତ ।

ଠକ୍ରୁ, ବି. (ସଂସ୍କୃତ) ତାକୁଡ଼ି (**Spindle**) ।

ଠଗର, ବି. ( ତଗର ଶବ୍ଦଜ ) ପୁଷ୍ପବିଶେଷ ଅର୍ଥାତ୍ ତଗରଠ । ଯଥା—

ଅଶିତ ଅପରାଜିତା ଧବଳ ଠଗର । କ. ବ.

ଠଗରପାଦ, ବି. (ତଗରପାଦ ଶବ୍ଦର ଅପଭ୍ରଂଶ) ଜଳଜାତ ଲତାବିଶେଷ ।

ଠଙ୍କ, ବି. ( ଠନ୍କ୍=ବନ୍ଧ କରିବା-ଅ ) ପାହାଡ଼ । ଯଥା—

ବନାନ୍ତେ ପଶିଲ ଯାଇ ଗିରିଠଙ୍କେ । ନ. କେ.

ବିଦାର୍ଣ୍ଣ ପ୍ରସ୍ତରଭାଗ; ପରମାଣବିଶେଷ; ଖଡ୍ଗକୋଷ; ଏକପ୍ରକାର ଅସ୍ତ୍ର; ପ୍ରସ୍ତରଭେଦନାସ୍ତ୍ର; ଖନନାସ୍ତ୍ର । (ଦେଶଜ) ଅମ୍ଳରସ ବା ଖଟା । ଯଥା—

ଠଙ୍କ ନ ଥାଇ ଠଭା ।

ଖଡ୍ଗ; କ୍ରୋଧ; ଠଙ୍କା; ଗର୍ବ ।

ଠଙ୍କଧର, ବି. (ଠଙ୍କ-ଧୃ-ଅ) ମହାଦେବ ।

ଠଙ୍କବଥୂଆ, ବି. (ଠଙ୍କବାସ୍ତୁକ ଶବ୍ଦଜ) ଏକପ୍ରକାର ଶାକ ।

ଠଙ୍କଶାଲା, ବି. ସ୍ତ୍ରୀ. ( ଠଙ୍କ-ଶାଲା ) ଯେଉଁ ଗୃହରେ ଠଙ୍କା ନିର୍ମାଣ କରନ୍ତି ।

ଠଙ୍କା, ବି. ସ୍ତ୍ରୀ. (ଠନ୍କ୍ ଶବ୍ଦଜ) ରୌପ୍ୟମୁଦ୍ରା; ଏକ ଠଙ୍କାକ ଷୋଳ ଅଣା । ଯଥା—

ମହାଜନେ ପାଟଣାର ପଶ୍ଚିମରେ ବସନ୍ତୁ,

ବିଶୋଇ ନାୟକ ଠଙ୍କା ଆଗେ ନ ବାନ୍ଧନ୍ତୁ ।

ନୃ. ପୁ. ଦ୍ୱି. ଚ.

ଠଙ୍କାଠୋକର, ବି. (ଦେଶଜ) ଧନସମ୍ପତ୍ତି ।

ଠଙ୍କାଶାଳ, ଠଙ୍କାଶାଳା, } ବି. (ଠଙ୍କଶାଲା ଶବ୍ଦଜ) ଯେଉଁ ଗୃହରେ ଠଙ୍କା ତିଆର ହୁଏ ।

ଠଙ୍କାର,ବି.(ଠନ୍-କୃ-ଅ)ଧନୁକର ଜ୍ୟାର ଶବ୍ଦ; ବିସ୍ମୟ, ଆଶ୍ଚର୍ଯ୍ୟ; ଖ୍ୟାତି, ପ୍ରସିଦ୍ଧି । ବଂ. ଠଙ୍କାରଯୁକ୍ତ । ବି. ସ୍ତ୍ରୀ. ତାରାଦେବୀ ।

ଠଙ୍କି, ବି. ( ଦେଶଜ ) ଲାଖରାଜ ଭୂମିରେ ନିରୂପିତ ରାଜକରବିଶେଷ ।

ଠଙ୍କିତ, ବଂ. (ଠଙ୍କ୍-ତ) ଶଙ୍କିତ; ଉଲ୍ଲିଖିତ; ବଦ୍ଧ ।

ଠଙ୍କିଦାର, ବି. (ଦେଶଜ)ଯେଉଁ ଲାଖରାଜଦାରମାନେ ଠଙ୍କି କର ପ୍ରଦାନ କରନ୍ତି ।

ଠଙ୍କିଳ, ବଂ. ( ଠଙ୍କ-ଇଲ ) ପାହାଡ଼ମୟ । ଯଥା—

ଘୋ କଟକ ଠେକ ଠଙ୍କିଲ ଛତିଆ । ନ. କେ.

ଠଙ୍ଗା, ବି. (ଦେଶଜ) ବାନ୍ଧି ଲମ୍ବାଇବା । ବଂ. ଯାହା ବାନ୍ଧି ଲମ୍ବାଇଥାଉଁ ।

ଠଙ୍ଗାଇବା, କ୍ରି. (ଦେଶଜ) ଲଟକାଇବା ।

ଠଣକା, ବି. (ଠନ୍କ୍ ଧାତୁଜ ବା ଠନକା ଶବ୍ଦଜ) ଟାଣିଧରିଥିବା ରକ୍ତ ।

ଠଣଠଣ, ବି. (ଦେଶଜ) ବ୍ରଣାଦିର ପକ୍ୱାବସ୍ଥାର ବେଦନା; ଅନୁକରଣ ଶବ୍ଦବିଶେଷ ।

ଠଣା, ବି. (ଦେଶଜ) ଟାଣିବା; ବେଦନା । ଯଥା—

ପାଣ୍ଡବ କୁରୁଙ୍କର ଗୋଳରୁ ସାଗୁଣା,

ବଳୁଆଏ ମାଂସରେ କରିବେ ପେଟଠଣା । କୃ.ଭା.ଦ୍ରୋ.ପ.

ଟଣାଟଣି, ବି. (ଟନ୍‌କ୍ ଧାତୁଜ) ଓଟରାଓଟର । ଯଥା—

ପ୍ରେମ ଲଙ୍କା ମଧ୍ୟେ ବଳ ଟଣାଟଣି
ଲାଗି ପ୍ରେମଶୀଳା ମନେ । ଯ. କେ.

ଟପଟପ, ଅଂ. (ଦେଶଜ) ଜଳବିନ୍ଦୁ ପତନର ଅନୁକରଣ ଶବ୍ଦ ।

ଟପରଟପର, ଅଂ. (ଦେଶଜ) ଜଳବିନ୍ଦୁ ପତନର ଅନୁକରଣ ଶବ୍ଦ । ଯଥା—

ମେଘ ବରଷିଲା ଟପର ଟପର
କେଶ୍ୱର ମାଇଲା ଗଜା । ଲ. ସା.

ଟପା, ବି. (ଦେଶଜ) ଗାନବିଶେଷ; ଡ଼ାକ (Post) । ଯଥା—

ସିପାହିମାନେ ଛାଡ଼ିଦେଇ ଘୋଡ଼ା ଧୂପା,
ଧାଇଁଲେ ଯମଠାକୁ ଘେନି ଯୁଦ୍ଧ ଟପା । ଲ୍ମ.ଖ୍ର.ଖ୍ଲୀ.ପ.

ଟପିବା, ଟପିଯିବା, } କ୍ରି. (ଦେଶଜ) ଅତିକ୍ରମ କରି-ଯିବା । ଯଥା—

ଖେଳ ଭାଙ୍ଗି ଯିଲେ ହରିବୋଲ ଦେଇ
ଦଉଡ଼ି ଆସନ୍ତି ଘରେ,
ଅର୍ଦ୍ଧପଥେ ମେଘ ଗୋଡ଼ାଇ ଧରଇ
ଟପିଯାଏ ତାଙ୍କୁ ଖରେ । ଲ. ସା.

ଟବ୍, ଅଂ. (ଦେଶଜ) ଜଳାଦି ତରଳ ପଦାର୍ଥରେ ଅନ୍ୟ ପଦାର୍ଥର ପତନ ଶବ୍ଦ । ଯଥା—

ଟହକହାସୀ ଇଶୋଗ୍ରୀ ମନ,
ଟବ୍ ପଶ ରସେ ବୁଡ଼ିବ ଯେନ । କ. ଚ. ଚ.

ପୁଷ୍ପ ରଖିବାପାଇଁ ମୃତ୍ତିକାନିର୍ମିତ ପାତ୍ର-ବିଶେଷ; ନହଥା ଅର୍ଥାତ୍ ବଡ଼ ବଡ଼ କୁଣ୍ଡ ।

ଟଭା, ବି. (ଦେଶଜ) ସ୍ୱନାମପ୍ରସିଦ୍ଧ ଫଳ । ଯଥା—

ଟଭାଫାଳ ପର ଖୋସା, ଖୋସିଛି ଯୋଷା ଏ । ଲ.ବ.

ଟମକ, ବି. (ଦେଶଜ) ଘୋଷଣା, ଢେଣ୍ଡୁରା ।

ଟମକଆ, ବି. (ଦେଶଜ) ଟମକ ବଜାଇବା ଲୋକ ।

ଟମଟମ, ବି. (ଦେଶଜ) ଦୁଇଚକିଆ ଘୋଡ଼ାଗାଡ଼ି ।

ଟମଟମା, ବି. (ଦେଶଜ) ବାଦ୍ୟବିଶେଷ; ଘୋଷଣା ।

ଟଷ୍ଟି, ଟରଣି, ବି. (ଯାବନିକ) ମୁକ୍ତାର ବା ଓକିଲ ନିକଟରେ ଅର୍ଥଲୋଭରେ ମୌକଲ ସଂଗ୍ରହକାରୀ ।

ଟରଟର, ଅଂ. (ଦେଶଜ) ଅନୁକରଣ ଶବ୍ଦ-ବିଶେଷ ।

ଟର୍ରର, ବିଂ. (ଦେଶଜ) ସତେଜ; ପୁଷ୍ଟ ।

ଟଳଟଳ, ଟଳମଳ, ଟଳମଟଳ, } ବିଂ. (ଟଲ୍ ଧାତୁଜ) ଅସ୍ଥିର, ଚଞ୍ଚଳ । ଯଥା—

ବେଣୁରାଜାର ଅନ୍ତକାଳେ,
ଭୂମି କମ୍ପିଲା ଟଳମଳେ । ଖ୍ର. ଦ. ସ୍ମ.

ଟଳଟଳିଆ, ବିଂ. (ଟଲ୍ ଧାତୁଜ) ଚଞ୍ଚଳ । ଯଥା—

ଟଳଟଳିଆ ନ କର ମନ,
ଟସକର ବହି ନେବେ ତୋ ଧନ । ଜ୍ଞା. କୋ.

ଟଳାଟଳି, ବି. (ଦେଶଜ) ଭଣ୍ଡାଭଣ୍ଡି ।

ଟଳିବା, କ୍ରି. (ଟଲ୍ ଧାତୁଜ) ଗଡ଼ପଡ଼ିବା । ଯଥା—

ଟଳିଲା ହସ୍ତିନା ହର୍ମ୍ୟରାଜି ଟଳଟଳେ । କ. ବ.

ଦୋହଲିବା; ଅନ୍ୟଥା ହେବା । ଯଥା—

ବଇଦେହୀ ଚରିତ୍ର ନ ଟଳିବ । ବୈ. ବ.

ନାଶ ହେବା । ଯଥା—

ଜୀବନାଶା ଟଳି ଯାଉଅଛୁ କଳି
ପାରୁନାହିଁ ମୁଁ ମୋ ହୃଦନ୍ତର । କ.ଚ.ଚ.

ଟସକର, ଟସ୍କର, ବି. (ତସ୍କର ଶବ୍ଦଜ) ଚୋର । (ଟଳଟଳିଆ ଶବ୍ଦ ଦେଖ ।)

ଟସର, ବି. (ତ୍ରସରଶବ୍ଦଜ ପ୍ରାକୃତ) ପାଟସୂତ୍ର-ବିଶେଷ ।

ଟହକ, ବିଂ. (ଦେଶଜ) ସୁନ୍ଦର; ରକ୍ତବର୍ଣ୍ଣ; ମନୋହର । ଯଥା—

ଟହକହାସୀ, କୁଟିଳ ଲୋକେ ନିକ
ବନ୍ଧନମୁକ୍ତ ବେଭାର ରେ । ଲ. ବ.

ଟହଟହ, ବିଂ. (ଦେଶଜ) ଅତି ଲାଲ । ଅଂ. ହାସର ଅନୁକରଣ । ଯଥା—

ଦେଖିଣ ବଳୁପ ରାମ ଟହ ଟହ ହସେ,
ଛିନ୍ନ କର୍ଣ୍ଣ ନାସିକା କେ ଆସେ ମୋର ପାଶେ । ବ.ରା.

ଟହଲ, ବି. (ହିନ୍ଦୀ) ଭ୍ରମଣ, ମଜଲିସ ଭ୍ରମଣ; ସେବା; ସେବାକାରୀର ଉପାଧିବିଶେଷ ।

ଟହଲିଆ, ବି. (ଦେଶଜ) ସେବାକାରୀ (Orderly); ଭ୍ରମଣକାରୀ ।

ଟହଲିବା, କ୍ରି. (ଦେଶଜ) ଭ୍ରମଣ କରିବା ।

ଟାଉଟାଉ, ବିଂ. (ଦେଶଜ) ତରତର ।

ଟାଉଁଟାଉଁ, କି. ବି°. ( ଦେଶଜ ) କର୍କଶ-ସ୍ୱରରେ (କଥା କହିବା) ।

ଟାକର, ବି. ( ଦେଶଜ ) ଅଙ୍ଗୁଳିଗ୍ରନ୍ଥି ଦ୍ୱାରା ମସ୍ତକରେ ଆଘାତ କରିବା ଅର୍ଥାତ୍ ଠଣା । ଯଥା—

ପର ପରିବାଦ ମୁଣ୍ଡେ ଟାକର ବରଷ । କ.ଚ.ଚ.

ଭର୍ତ୍ସନା ବା ପରାଭବ ।

ଟାକରା, ବି. (ଦେଶଜ) ତାଳୁ; ତାଳୁକା ଓ ଜିହ୍ୱାସଂଯୁକ୍ତ ଶବ୍ଦ ।

ଟାକରାଫୁଟାଇବା, } କି. (ଦେଶଜ) ତାଳୁ ଓ
ଟାକରାମାରିବା, } ଜିହ୍ୱାଦ୍ୱାରା ଶବ୍ଦ କରିବା ।

ଟାକିବା, କି. (ଦେଶଜ) ଜଗିବସିବା; ଅପେକ୍ଷା କରିବା; ଲକ୍ଷି ରହିବା ।

ଟାକୁଆ, ଟାକ୍ୱା, ବି. ( ଦେଶଜ ) ଆମ୍ବବାଜ, କୋଇଲିର କଠିନ ଆବରଣ; ମିଷ୍ଟାନ୍ନ-ବିଶେଷ; ବାଣି କାଟିବା ଯନ୍ତ୍ରବିଶେଷ । ବି°. ଆମ୍ବଟାକୁଆ ଭଳି ଚେପଟା ।

ଟାଙ୍କ, ବି. (ଟଙ୍କ ଶବ୍ଦଜ) ଜଙ୍ଘା ।

ଟାଙ୍କିବା, କି. (ଦେଶଜ) ହାତଦ୍ୱାରା କୌଣସି କ୍ଷୁଦ୍ର ପଦାର୍ଥ ଓଜନ କରିବା; ସିଲାଇ କରିବା ।

ଟାଙ୍କୁ, ଟାଙ୍କୁଆ, ବି. (ଦେଶଜ) ଆମ୍ବଟାକୁ; ଉଇହୁଙ୍କା ମଧ୍ୟସ୍ଥ ଉଇବସା ।

ଟାଙ୍କୁରିବା, ଟାଙ୍କୋରିବା, କି. ( ଦେଶଜ ) ରୋମାଞ୍ଚ ହେବା । ଯଥା—

ରୋମମୂଳମାନ ଟାଙ୍କୁରି ଉଠିଲା । ପାବଣ ।

ଟାଙ୍କେ,କି.ବି°. (ଦେଶଜ)ବିଶେଷ ପରିମାଣରେ (ମାଡ଼ ଦେବା) । ବି°. ଅନେକ ।

ଟାଙ୍ଗଣ, ଟାଙ୍ଗଣା, ବି. ( ଟଙ୍ଗଣ ଶବ୍ଦଜ ) ସୋହାଗା; ସାନ ଘୋଡ଼ା; ଟଡ଼ୁ ଘୋଡ଼ା ।

ଟାଙ୍ଗର, ବି. (ଦେଶଜ) କେଶଶୂନ୍ୟ ମସ୍ତକ । ଯଥା—

ଟାଙ୍ଗରମୁଣ୍ଡେ ହସ୍ତ ଦେଲେ,
କେଶ ତୋ କଅଁ ଳୁ ବୋଇଲେ । ଦା. ର.

ବୃକ୍ଷାଦିଶୂନ୍ୟ ପାହାଡ଼ିଆ ଭୂମି । ଯଥା—

ଫିଟିଛୁ ଝର ଦେଖ ଟାଙ୍ଗର ଅଙ୍ଗେ । ଭୁ. ପ୍ର.

(ଗଡ଼ଜାତ ଶବ୍ଦ) ଟେକା ।

ଟାଙ୍ଗରା, } ବି°. (ଦେଶଜ) ଯାହା ମୁଣ୍ଡରେ
ଟେଙ୍ଗରା, } ବାଳ ନ ଥାଏ ଅର୍ଥାତ୍ ଚନ୍ଦା-ମୁଣ୍ଡିଆ । ବି. ରନ୍ଧନଗୃହରେ ହାଣ୍ଡି ପ୍ରଭୃତି ରଖିବା ସ୍ଥାନ ।

ଟାଙ୍ଗା, ବି. (ଦେଶଜ) ଗୋଟିକିଆ ବଳଦ କିମ୍ବା ଘୋଡ଼ାର ଦୁଇଚକିଆ ଗାଡ଼ି । (ଗୋଟିଆ ଶବ୍ଦ ଦେଖ ।)

ଟାଙ୍ଗି,ଟାଙ୍ଗିଆ,ଟାଙ୍ଗୀ,ବି.(ଟଙ୍ଗ ବା ଟଙ୍କଶବ୍ଦଜ) କ୍ଷୁଦ୍ର ପାହାଡ଼; ପ୍ରସ୍ତରମୟ ପ୍ରଦେଶ; କୁଠାରବିଶେଷ । ଯଥା—

ତେଣୁ ଏକମୁନା ଟାଙ୍ଗି ଆଦି ଶସ୍ତ୍ର ଧରି । ମ. ଯା.

ଟାଙ୍ଗିବା, କି. ( ଟଙ୍କ ଶବ୍ଦଜ ) ହାଣିଦେବା; ଲଟକାଇବା । ଯଥା—

ଫାଶ ଲଗାଇ ତା ଗଳାରେ,
ଟାଙ୍ଗନ୍ତି ଶିମୁଳି ବୃକ୍ଷରେ । ବି. ପୁ.

ଟାଙ୍ଗେରା, ବି. ( ଟଙ୍ଗଦ୍ରୁଣ ଶବ୍ଦଜ ) (ମୁଣ୍ଡ) ହଲାଇବାର କ୍ରିୟା ।

ଟାଙ୍ଗାରିବା, } କି. ( ଦେଶଜ ) ( ମୁଣ୍ଡ )
ଟାଙ୍ଗୁରିବା, } ହଲାଇବା ।
ଟୁଙ୍ଗାରିବା, }

ଟାଟ୍ଟୁ, ବି. (ଦେଶଜ) ଗୋଟଘୋଡ଼ା (**pony**) ।

ଟାଣ, ବି. (ଦେଶଜ) ଗୁମାନ ବା ଗର୍ବ; କାଠିନ୍ୟ; ସ୍ପୃହା ( **tendency** ) । ଉଚ୍ଚସ୍ୱର । ଯଥା—

ଗେରସ୍ତ ଟାଣରେ ଡ଼ାକେ ଉଠାଇ,
ଦୁଙ୍ଗୁଡ଼ିରେ କର ଦେଉ ଉଡ଼ାଇ । ହା. ତ.

ବି°. କଠିଣ । ଯଥା—

ବାଳାବଚନ କୁଳିଶ ଟାଣ ।

ଅସହ୍ୟ । ଯଥା— ଟାଣ ଖରା ।

ଟାଣହଟା, ବି°. (ଦେଶଜ) ଯେଉଁ ବଳଦ ମାଡ଼ ଖାଇଲେହେଁ କାର୍ଯ୍ୟ କରେ ।

ଟାଣି, ବି. (ଦେଶଜ) ବସ୍ତ୍ରର ଲମ୍ବ ସୂତା । (ତୌଡ଼ା ବାଗରେ ଯେଉଁ ସୂତା ଥାଏ ତାକୁ ଭରଣୀ କହନ୍ତି ।)

ଠାଣିବା, କ୍ରି. ( ତନ୍ ଧାତୁଜ ) ଆକର୍ଷଣ କରିବା; ଓଟାରିବା । ଯଥା—
ଠାଣୁଛୁ କର୍ଣ୍ଣଯାଏ ଶରାସନ । ବ. ଚ. ମ.
ଛନ୍ଦାଦି ବିସ୍ତୃତ କରିବା; (ପେଟ ବା କାନ) ବ୍ୟଥା କରିବା; ଗର୍ବ କରିବା । ଯଥା—
ଆମ୍ଭେ ତ ନିଗର୍ଭିକୁ ବଳ୍ଲବବଲେ ଜିଣି,
କହୁଥାଇଁ ସଭା ମଧ୍ୟେ କଥା ଠାଣି । କୃ. ଖ. ବ. ପ.

ଠାଣିହେବା, ଠାଣିଠଣି ହେବା, } କ୍ରି. (ଦେଶଜ) ଗର୍ବରେ କହିବା; ଓଟାରିହେବା । ଯଥା—
ଭୀଷ୍ମ ଦ୍ରୋଣ କର୍ଣ୍ଣ ଶଲ୍ୟଙ୍କୁ ନ ଜିଣି,
ନ କହ ସଭାମଧ୍ୟେ ହୋଇ ଠାଣିଠଣି । କୃ.ଖ.ଉ.ପ.

ଠାଣୁଆଁ, ବିଂ. (ଦେଶଜ) ଶ୍ଳକ୍ଷ୍ଣ ବା କଠିଣ; ସବଳ ।

ଠାଣୁଠୁଣୁ, ବି. (ଦେଶଜ) ଗର୍ବ ।

ଠାପରି, ଠାପରିଠାପରି, } ବି. (ଦେଶଜ) ପରିହାସ, ଥଟ୍ଟା, ରହସ୍ୟ । ଯଥା—
ଠାପରିଯୋଗ୍ୟ କେ କହିଲେ ବନ୍ଧୁ,
ଠାକ ରହିଛୁ ତୋ ଅଙ୍କାକୁ ମୁହିଁ । ବ. ଚ. ମ.

ଠାପରିଖେଳିବା, କ୍ରି. (ଦେଶଜ) ପରିହାସ କରିବା ।

ଠାପୁ, ଠାପ, ବି. (ଦେଶଜ) ଦ୍ୱୀପ; ମନୁଷ୍ୟ-ମାନଙ୍କର ପାଦ । ଯଥା—
ନଟଗୋପାଳଆର ଗଞ୍ଜାଇ ଆପୁ,
ଢନେ କୋହିଲେ ଯେ ନ ଚଳେ ଠାପୁ । ହା. ତ.
(ବିଶେଷତଃ ହାସ୍ୟରସରେ ବ୍ୟବହୃତ) ଅଶ୍ୱାଦି ପଶୁମାନଙ୍କର ପାଦ । ଯଥା—
କମ୍ପାଇବ ଅଶ୍ୱବାର ଅଶ୍ୱକ୍ଷୁର ଠାପୁ । ମ. ଯା.
ମନୁଷ୍ୟର ଚାରିକାତ—ଦୁଇ ହାତ ଦୁଇ ଗୋଡ଼ । ଯଥା—
ଅଙ୍କା ପ୍ରମାଣେ ଶର ଚଳିଲା ଶୀଘ୍ରେ ଯାଇ,
ଚାରି ଠାପୁ ଛେଦି ମୁଣ୍ଡ ଭୂରେ ଦେଲା ଥୋଇ ।
ନୃ. ପୁ. ଚ. ତ.

ଠାମଜନ, ବି. (ଦେଶଜ ପ୍ରାୟ) ଏକପ୍ରକାର ସବାରି ।

ଠାଳଠୁଳ, ବି. ( ଦେଶଜ ) ଭଣ୍ଡାଭଣ୍ଡି, ଠକାଠକି, କାଳକ୍ଷେପଣ; ଠାଳିବା ।

ଠାଳମଠାଳ, ବି. ( ଦେଶଜ ) ଭଣ୍ଡାଭଣ୍ଡି; ଠାଳିବା ।

ଠାଳମଠାଳ କରିବା, କ୍ରି. ( ଦେଶଜ ) ଉଲଟାଇବା ।

ଠାଳିବା, କ୍ରି. (ଦେଶଜ) ଅନ୍ୟଥା କରିବା; ମୂଳୋତ୍ପାଟନ କରିବା; ଭାଙ୍ଗିବା: କୌଣସି ଛଳନାଦ୍ୱାରା କାଳକ୍ଷେପଣ କରିବା; ଥଟ୍ଟା ବା ପରିହାସ କରିବା ।

ଠାଁସ, ଠାଁସା, ଠାଁଆସା, } ବିଂ. ( ଦେଶଜ ) କର୍କଶ (କେଶ ବା ଲୋମ) ।

ଠାଁସମାଲପା, ବି. (ଗଞ୍ଜାମରେ) ଏକପ୍ରକାର ବାଦ୍ୟ ।

ଠାହି, ବି. (ଦେଶଜ) ପରିହାସ ।

ଠାହିବା, କ୍ରି. (ଦେଶଜ) ପରିହାସ କରିବା ।

ଠାହୁଲି, ବି. (ଦେଶଜ) ପରିହାସ ।

ଠାହୁଲିଆ, ବିଂ. (ଦେଶଜ) ପରିହାସପ୍ରିୟ ।

ଠି, ଅଂ. (ଦେଶଜ) ଶବ୍ଦବିଶେଷ; ନିଶ୍ଚୟାର୍ଥ; ପାଦପୂରଣାର୍ଥ । ଯଥା—
ଛୋଟ ବୟସରେ ଆମ୍ଭ ବୁଦ୍ଧି ସରେ
ଗୁହିଁବୁ ତୋପରେ କାହାକୁଠି । ବ. ଚ. ମ.

ଠିଆ, ବି. (ଦେଶଜ) ଏକପ୍ରକାର ଶୁଆ; ଶୁକ-ପକ୍ଷିବିଶେଷ; ଉତ୍ତେଜନା ।

ଠିଆଇବା, କ୍ରି. (ଦେଶଜ) ଉତ୍ତେଜନା କରିବା ।

ଠିଆମଠା, ବି. (ଦେଶଜ) ଉତ୍ତେଜନା ।

ଠିକ, ଠିକକ, ଠିକି, } ବିଂ. ( ଦେଶଜ ) ସାମାନ୍ୟ; ଛୋଟ, କ୍ଷୁଦ୍ର; ଅଳ୍ପ । ଯଥା—
ବୋଟମାନ ବହିକରି ଆନେ ବାଳକେ,
ତଷା କଲା ବାଟେ ଜଳ ନ ମିଳିଲା ଟିକେ । ନୃ.ପୁ.ପ୍ର.ତ.
ଟିକକ ଦୋଷକୁ ରାମା ଏତେ ରୁଷା ରୁଷିଲା । ର. ଚ

ଠିକଠିକ, ଠିକିଠିକ, } ବି. ( ଦେଶଜ ) ପକ୍ଷିବିଶେଷ ଯଥା—
ମୃଦୁନାଦେ କାହିଁ ରଟେ ଟିକଟିକ
ବିହଙ୍ଗମ ଜାଙ୍ଗଲବାସୀ । ଉର୍ବଶୀ
ବିଂ. ଅତି ଅଳ୍ପ ବା କ୍ଷୁଦ୍ରଖଣ୍ଡ ।

ଠିକର, ବି (ଦେଶଜ) କୁଦ ବା ଉଚ୍ଚସ୍ଥାନ ଯଥା—ଟିକର ଭୂଇଁରେ ନ କର ଚାଷ ।

ଟିକସ୍, ବିଂ. (ଦେଶଜ) ଉଚ; ଅଳ୍ପ । ଯଥା—
କେବେ ନ କରବୁ ଟିକସ୍ ଗୃଷ,
କର ଦେବୁ ନାହିଁ ଲଭରେ ଆଶ । ଉ. ସା.
ବି. ଚଷାମାନେ ବିଲରୁ ପଶୁ ପକ୍ଷି ପ୍ରଭୃତିଙ୍କୁ ଚମକାଇ ତଡ଼ିବାପାଇଁ ଯେଉଁ ଦୁଇଖଣ୍ଡି ଗଣ୍ଡିଆ ବାଉଁଶ ବଜାନ୍ତି ।

ଟିକଲ, ବି. (ଦେଶଜ) ପଞ୍ଚଦ୍ୱାସ ।

ଟିକା, ଟୀକା, ବି. (ଦେଶଜ) ତିଳକବନ୍ଦ । (ଗଡ଼ଜାତ ଶବ୍ଦ) ଭେଟି ନଜୁବା ପାଦପୂଜା; ବସନ୍ତରୋଗ ନିବାରଣାର୍ଥ ହସ୍ତରେ କ୍ଷୁଦ୍ର ଛିଦ୍ର କରି ରୋଗବୀଜ ଗ୍ରହଣ କରିବା; ସ୍ୱର୍ଣ୍ଣ ରୌପ୍ୟାଦିନିର୍ମିତ ପଦକ । ବିଂ. ଶ୍ରେଷ୍ଠ ।

ଟିକାଏ, ବିଂ. (ଦେଶଜ) ଅଳ୍ପ; ଅଳ୍ପକ୍ଷଣ । ଯଥା—
ଟେକ ଆନ ଟେକ ଆନ ବାଞ୍ଛା ପରିଣସନ୍ଧ,
ଟିକାଏ ରସ ଟୀକାଏ ଚଢ଼ ଶାସ୍ତ୍ରରେ ପର ରୁନ୍ଧ । କୋ. ବ୍ର. ସୁ.

ଟିକାଇତ, ଟୀକାଇତ, ଟିକାୟତ, ଟିକାଏତ, } ବି. (ଦେଶଜ) ରାଜାଙ୍କ ବଡ଼ ପୁଅ । ଯଥା—
ଟିକାଏତ ଅଷ୍ଟଦୁର୍ଗର କହିଇ ଶ୍ୟାମ ଏ କ ଆଚରିତ । କ. ଚ. ଚ.
ରାଜାଙ୍କ ନିକଟରେ ଉପାଧିପ୍ରାପ୍ତ ବା ସମ୍ଭ୍ରାନ୍ତ ବ୍ୟକ୍ତି ।

ଟିକି, ଟିକିକି, ବିଂ. (ଦେଶଜ) ଅଳ୍ପ; ସାନ, ଛୋଟ । ଯଥା—
ଟିକିଦିନୁ ହେବେ ଜଣା ରୂମ୍ଭର । ବ. ଚ. ମ.
ଖଣ୍ଡ । ଯଥା—
ଶଲ୍ୟ ଛୁର ନାଦଣ ସାତ୍ୟକ ଧନୁଚିକ,
ମୁଠିଠାରୁ କରିଦେଲେ ଦୁଇ ଟିକି । କୃ.ସ୍ତ.ଶ.ପ.

ଟିକିଆ, ବି. (ଦେଶଜ) ଘୁଡ଼ାଖୁ ବା ଗୁଳରେ ନିଆଁ ଧରାଇବା ନିମନ୍ତେ ଅଙ୍ଗାର ଗୁଣ୍ଡିରେ ପ୍ରସ୍ତୁତ ଗୋଲକାର ଖଣ୍ଡ । ଯଥା—
ଟିକିଆ ଖଣ୍ଡ ଖାଣ୍ଡି ନିଅ ଝୁଲ ସବୁ ଲୁଗାପଟାଯାକ ଭୁଷି ପଡ଼ିଲି । ଛ. ଆ. ଗୁ.

ଟିକିଟିକି, ବିଂ. (ଦେଶଜ) ଖଣ୍ଡ ଖଣ୍ଡ । ବି. ଝିଟିପିଟି ।

ଟିକିପେ, ଟିକିଏ, } ବିଂ. (ଦେଶଜ) ଅଳ୍ପ;
ଟିକାଏ, } ଅଳ୍ପକାଳ । ଯଥା—
କି କହେ ସଖୀଏ ରହ ଗୋ ଟିକିଏ
ଡାକ ଆଣେ ଅଭଡାକୁ । କ. ମ.

ଟିକିର, ବିଂ. (ଦେଶଜ) କ୍ଷୁଦ୍ର ବା ଛୋଟ ।

ଟିକିଲ, ଟିକିଲି, ବି. ସ୍ତ୍ରୀ. (ଦେଶଜ) ସ୍ତ୍ରୀମାନଙ୍କ ଭ୍ରୂଦ୍ୱୟର ମଧ୍ୟସ୍ଥ ଅଳଙ୍କରଣବିଶେଷ ଅର୍ଥାତ୍ ଏକମକାର ଟିପା; ଡାକରେ ବ୍ୟବହୃତ ଷ୍ଟାମ୍ପ (Postage stamp)

ଟିଙ୍କ, ଟିଙ୍କି, ବି. (ଦେଶଜ) ପଶୁ ଦେହର ରକ୍ତଶୋଷକ କୀଟ ।

ଟିଙ୍କିଶୁଳା, ବିଂ. (ଦେଶଜ) ଚଡ଼ା, ଯେ ଅଳ୍ପ କଥାରେ ଚଡ଼େ ବା ରାଗେ ।

ଟିଟିଭ, ବି. (ଟିଟ୍ଟିଭର ଅପଭ୍ରଂଶ) ପକ୍ଷିବିଶେଷ ।

ଟିଟ୍ଟିଭ, ଟିଟ୍ଟିଭକ, ବି. (ଟିଟ୍ଟି = ଅନୁକରଣ ଶବ୍ଦ-ଭାଷ୍-ଅ, କ—ସ୍ୱାର୍ଥେ) ପକ୍ଷିବିଶେଷ ।

ଟିଟିର, ବି. (ଦେଶଜ) ପକ୍ଷିବିଶେଷ ।

ଟିଣା, ବି. (ଦେଶଜ) ଉପଧାତୁବିଶେଷ; ଗୁଳ୍ମବିଶେଷ; ରାଗୀ ଅର୍ଥାତ୍ ଯେ ଅଳ୍ପ କଥାରେ ଚଡ଼ି ଉଠେ ।

ଟିନ, ଟିଣ, ବି. (ଇଂରାଜୀ ଶବ୍ଦ) ଉପଧାତୁବିଶେଷ; ଟିଣନିର୍ମିତ ପାତ୍ର ।

ଟିପ, ବି. (ଟିପ୍ ଧାତୁଜ) ଅଙ୍ଗୁଳିର ଅଗ୍ର । ଯଥା—
ବରଷକୁ ଟିଏ ଗୋଡ଼ ଅଙ୍ଗୁଷ୍ଠି ଟିପେ ରହି,
ତପ କଲୁ ତା କରି ନ ପାରିଲେ କେହି । କୃ.ସ୍ତ.ଦ.ପ.
ଅଙ୍ଗୁଳି ଅଗ୍ର ମର୍ଦ୍ଦିତ । ଯଥା—ଗୃହଟିପ ନାସ । କରନପଣ । ଏଥିରେ ଟିପଚିହ୍ନ ଅର୍ଥାତ୍ finger impression ବ୍ୟବହୃତ ହେଉଥିବାରୁ) (ପୁଞ୍ଜିପଟା ଶବ୍ଦ ଦେଖ) ଗଞ୍ଜପା ସାରରେ ଏକଠାରୁ ଦଶ ପର୍ଯ୍ୟନ୍ତ ଲେଖିବା ଚିହ୍ନ; ସ୍ୱଳ୍ପ ଦୋଷ । ଯଥା—
ଆହ ଆହ ଗୁଣ କେଉଁ ବିଚକ୍ଷଣ
ଟିପ ଦେବ ଦଶୁ ନାହିଁ । ବ. ଚ. ମ.

ଟିପଚିହ୍ନ, ବି. କାଗଜ ଉପରେ ଅଙ୍ଗୁଳି ଅଗ୍ରଭାଗଦ୍ୱାରା କାଳିରେ ଚିହ୍ନ ଦେବା କ୍ରିୟା । (**finger impression**) ।

ଟିପଣା, ଟିପଣୀ, } ବି. (ଟିପ୍ପଣୀ ଶବ୍ଦର ଅପଭ୍ରଂଶ) ସ୍ମରଣାର୍ଥ କୌଣସି ବିଷୟ ଲେଖି ରଖିବା ପତ୍ର; ଜାତକ ବା ଜନ୍ମପତ୍ରିକାର ସଂକ୍ଷେପ ଲିପି; ଟୀକା ।

ଟିପଦେବା, କ୍ରି. (ଦେଶଜ) ଦୋଷ ଦେଖାଇବା । (ଟିପ ଶବ୍ଦ ଦେଖ ।)

ଟିପମାରିବା, କ୍ରି. (ଦେଶଜ) ଦସ୍ତଖେଳରେ ହୁକୁମ ସାର ଭୁଲେ ବିନା ସାର ଘେନିବା ।

ଟିପା, ବି. (ଦେଶଜ) ସ୍ମାରକ ପତ୍ର; ଚିଠା । ଯଥା—

ଚୂନ କଳା ଦଣ୍ଡ ଆଣି ଗୋଳାଇ,
ଟିପା ଦେଲା ଭିକା ମୁଖରେ ନେଇ । ହା. ଚ.

ଟିପାଇ, ଟିପେଇ, ତିପାଇ, } ବି. (ତ୍ରିପଦୀ ଶବ୍ଦଜ) ଶଗଡ଼ ଝୁଙ୍ଗାମୁଣ୍ଡି ଟେକି ଧରିବା କାଷ୍ଠ; ତିନପାଦବିଶିଷ୍ଟ କ୍ଷୁଦ୍ର ମେଜ ବା କାଷ୍ଠାଧାରବିଶେଷ ।

ଟିପାକାଠି, ବି. (ଦେଶଜ) ଏହି କାଣ୍ଡଦଣ୍ଡରେ ନୋଳିଆମାନେ ବସି ଅବହେଳାରେ ସମୁଦ୍ରରେ ବୁଲନ୍ତି । ଯଥା—

ଟିପାକାଠି ପୃଷ୍ଠେ ତରଙ୍ଗେ ନୋଳିଆ
ଗାଏ ଜୟ ଗଙ୍ଗେଶ୍ୱର । ପାର୍ବତୀ ।

ଟିପାଟିପି, ବି. (ଦେଶଜ) ଠାରାଠାରି; ସଂକ୍ଷେପରେ ଲେଖାଲେଖି ।

ଟିପିଟିପିକିଆ, ବିଂ. (ଦେଶଜ) ଯାହାର ଟିପିଟିପି ଚିହ୍ନ ଥାଏ । ଯଥା—

ଟିପିଟିପିକିଆ ହରିଣୀଟିଏ ଲୋ ନିତି ଆସୁଥାନ୍ତି ଧରି ।
ଉ. ସା. ୧୮. ୮.

ଟିପିଦେବା, କ୍ରି. (ଟିପ୍ ଧାତୁଜ) ଇସାରା କରିବା; (ଠୋପ ଶବ୍ଦ ଦେଖ) ଚିପିଦେବା; ସଂକ୍ଷେପରେ ଲେଖିଦେବା; ସଂକ୍ଷେପରେ ଲେଖି ରଖିବା ।

ଟିପିବା, କ୍ରି. (ଟିପ୍ପଣୀ ଶବ୍ଦଜ) ଟିପଦ୍ୱାରା ବାଦ୍ୟ ବଜାଇବା । ଯଥା—

କାଖରେ କଲଧୌତକଡ଼ କରେ ବୀଣା ଟିପି । ନୃ. ସୁ. ପ୍ର. ଚ.

ସ୍ମରଣାର୍ଥ କୌଣସି ବିଷୟ ଲେଖିବା; ସଙ୍କେତରେ କହିବା । ଯଥା—

ବାପାଙ୍କ କଥା ଶୁଣି ହୃଦର ଭୟରେ,
ଆଖି ଟିପି ବାପାଙ୍କୁ ନିବାରଣ କଲେ । କୃ. ଭା. ବି. ପ.

(ଟିପ୍ ଧାତୁଜ) ଆଘାତ କରିବା । ଯଥା—

କରରୁହ ଟିପି ନାନାପ୍ରକାର । ର. ପ.

ଟିପୁଣା, ବି. (ଦେଶଜ) ଚିତ୍ରକାରମାନେ ରୂପଚିତ୍ରର ପୂର୍ବେ ରୂପ ଗାରେଇଥିବା ପଟ ପ୍ରଭୃତି ।

ଟିପେଇ, ବି. (ଦେଶଜ) ପାଣିରେ ଭସାଇ ମାଛ ଧରିବା ଯନ୍ତ୍ର । ଯେପରି—ସୋଲ ଟିପେଇ ।

ଟିପ୍ପଣୀ, ବି. (ଟିପ୍ ଧାତୁଜ) ଜନ୍ମପତ୍ରିକାର ସଂକ୍ଷେପ-ଲିପି; ସଂକ୍ଷିପ୍ତ ଟୀକା ।

ଟିଭିକ, ବି. (ଦେଶଜ) ଗୁହ୍ୟଦ୍ୱାର ।

ଟିମ, ବି. (ଡିମ୍ବ ଶବ୍ଦଜ) ଶିଶୁ ।

ଟିମା, ଟିମକ, ବିଂ. (ଦେଶଜ) ଖର୍ବକାୟ, ବାଙ୍ଗର ।

ଟିରିକ, ବି. (ଦେଶଜ) ମେରୁଦଣ୍ଡର ନିମ୍ନସ୍ଥାନ ।

ଟିଲି, ବି. (ଦେଶଜ) ଘର ପକାଇବା ସମୟରେ ଦୋଷ ନିବାରଣାର୍ଥ ତର୍ଜନୀ ଓ ମଧ୍ୟମାଙ୍ଗୁଳିଦ୍ୱୟକୁ ଛନ୍ଦି ରଖିବା ।

ଟୀକା, ବି. ସ୍ତ୍ରୀ. (ଟୀକ୍=ଗମନ କରିବା-ଅ-ଆ -ଯାହାଦ୍ୱାରା ମୂଳଗ୍ରନ୍ଥର ଅର୍ଥ ବୁଝିଲେ) ବିବୃତି, ବ୍ୟାଖ୍ୟା ।

ଟୁକି, ବି. (ବାଲେଶ୍ୱର ପ୍ରାନ୍ତରେ ବ୍ୟବହୃତ) ପଥର ବାଟି ।

ଟୁକିବା, ଟୋକିବା, କ୍ରି. (ଦେଶଜ) ଗୋଟାଇ କରି ଖାଇବା, ଖାଇବା ।

ଟୁକୀ, ବି. ସ୍ତ୍ରୀ. (ଗଡ଼ଜାତ) ଟୋକୀ ବା ବାଳିକା ।

ଟୁକୁଣା ବି. (ବାଲେଶ୍ୱର ପ୍ରାନ୍ତରେ ବ୍ୟବହୃତ) ଡାଳ, ନୋଠା ।

ଟୁକୁମଟାମ, ବି. (ଦେଶଜ) ଇଟା ପଥର ବାନ୍ଧ ସମାନ ଦେଖିବା ଯନ୍ତ୍ର ।

ଟୂକୁଳୀ, ବି. ସ୍ତ୍ରୀ. (ବାଲେଶ୍ୱର ପ୍ରାନ୍ତରେ ବ୍ୟବହୃତ ) ଅପ୍ରାପ୍ତବୟସ୍କା କନ୍ୟା ଅର୍ଥାତ୍ ଟୋକୀ ।

ଟୂଙ୍ଗା, ବି. (ଦେଶଜ) ବନ୍ୟଖାଦ୍ୟବିଶେଷ ।

ଟୂଙ୍ଗୀ, ବି. (ଦେଶଜ) ଏକପ୍ରକାର ଆଖଡ଼ା ।

ଟୂଙ୍ଗେଇ, ବି. (ଦେଶଜ) ଏକଜାତୀୟ କ୍ଷୁଦ୍ର-ମୂଷିକ ।

ଟୂଣଟୂଣ, ବିଂ. ( ଦେଶଜ ) ପ୍ରକାଶୋନ୍ମୁଖ । ଯଥା—ଗର୍ଭିଣୀଙ୍କୁ ଟୂଣଟୂଣ । ବି. ଘଣ୍ଟିର ଶବ୍ଦ ।

ଟୂଣା, ବି. (ଦେଶଜ) ଗାରଡ଼, ମାୟା ।

ଟୂଣୁକା, ବି. (ଦେଶଜ) ସାମାନ୍ୟ ଉପାଦାନ-ବିଶିଷ୍ଟ ଔଷଧ ।

ଟୂଣୁକାଟୂଣୁକ, ବି. ( ଦେଶଜ ) ଏଣୁତେଣୁ ଉପଚାର ।

ଟୂଣୁଟୂଣୁ, ଟୂଣ୍ଣୁଣୁ, ଅଂ. (ଦେଶଜ) ଅନୁକରଣ ଶବ୍ଦବିଶେଷ; ଘଣ୍ଟିର ଶବ୍ଦ ।

ଟୂପା, ବି. (ସମ୍ବଲପୁରରେ) ସାନ ପାଛୁଆ ।

ଟୂରା, ବି. (ଗଡ଼ଜାତ) ମାତୃପିତୃହୀନ ବାଳକ ।

ଟୂରୀ, ବି. ସ୍ତ୍ରୀ. ( ଗଡ଼ଜାତ ) ମାତୃପିତୃହୀନ ବାଳିକା ।

ଟେକ, ବି. ( ଦେଶଜ ) ମହତ୍ତ୍ୱ; ଆଧିକ୍ୟ; ପ୍ରାଧାନ୍ୟ । ଯଥା—

ନିଜ ସ୍ଥଳୀ ବୋଲି ସ୍ୱର୍ଗ ଟେକ ସିନା
ବଢ଼ାନ୍ତି ଅମରଗଣ । ଉର୍ବଶୀ ।

ପ୍ରଶଂସା । ଯଥା—

କନ୍ଧି ନୁହଇ ସୁରଙ୍ଗ ଅଧର ଟେକ । ର. କ.

ଗୁମାନ । ଯଥା—

ଟାଣ ଚଣା ଚର୍ବଣ ନାରଦ କଲି ପଣ,
ଟେକ ଓଜ ଭଜିବ ଅବଶ୍ୟ ଶ୍ରମ କରି । ବି.ଚି.ମ.

ବିଂ. ଶ୍ରେଷ୍ଠ । ( ଟିକାଏ ଶବ୍ଦ ଦେଖ ) କ୍ରି. ଉଠାଅ ।

ଟେକା, ବି. ( ଦେଶଜ ) ମୃତ୍ତିକାଖଣ୍ଡ । ଟେକବା । ଯଥା—

କାହିଁ କୂର୍ମ ରୂପରେ ହୋଇଛ ପୃଥ୍ୱୀ ଟେକା ।
ନୃ.ପୂ.ପ.ଭ.

ବିଂ. ଟେକବା ବ୍ୟକ୍ତି । ଯଥା—

କରୁ ଯା ଥିଲି ମନରେ ଦକା,
ତାହା ଶୁଣିଲେ ମନ୍ଦରଟେକା । ର. କ.

ଯାହାଙ୍କୁ ଟେକଥାନ୍ତି ଅର୍ଥାତ୍ ଉତ୍ତୋଳିତ । ଯଥା—

ଢ଼ାଳନ୍ତି ଚାମର ଶ୍ୱେତଛତ୍ର ଟେକା ଛନ୍ତି । କୋ.ବ୍ର.ସୁ.

ଟେକାଟେକ, ବି. ( ଦେଶଜ ) ତୋଷାମଦ, ଗୃଚ୍ଛୁ; ଧରାଧରି ।

ଟେକାପାଣି, ଟେକାଭାତ, } ବି. ଯେଉଁ ଲୋକ ଜାତିରୁ ଅଟେକ ହୁଏ ସେ ଅପର ଲୋକ-ବ୍ୟବହୃତ ପାତ୍ରରେ ଖାଏ ନାହିଁ ବା ପାଣି ପିଏ ନାହିଁ, ତାଙ୍କୁ ଟେକକରି ଭାତ ବାଢ଼ି ଦିଅନ୍ତି ଓ ପାଣି ଗଡ଼ାଇଦେଲେ ସେ ଅଞ୍ଜୁଳି କରି ପିଏ ।

ଟେକିବା, କ୍ରି. (ଦେଶଜ) ଉତ୍ତୋଳନ କରିବା; ପ୍ରଶଂସା କରିବା ।

ଟେକହେବା, କ୍ରି. ( ଦେଶଜ ) ଗର୍ବ ବଢ଼ିବା; ଉପରକୁ ଉଠିବା ।

ଟେଙ୍ଗରି, ତେଙ୍ଗଡ଼ା, } ବି. (ଦେଶଜ) ରନ୍ଧନଗୃହରେ ହାଣ୍ଡି ପ୍ରଭୃତି ରଖିବା ସ୍ଥାନ ।

ଟେଙ୍ଗାଇବା, ଟେଙ୍ଗିବା, } କ୍ରି. (ଦେଶଜ) ଶଗଡ଼ ପ୍ରଭୃତିର ଏକଭାଗ ଉପରକୁ ଟେକିବା ।

ଟେଣ୍ଟୁଆ, ବି. (ଦେଶଜ) ପକ୍ଷିବିଶେଷ । ଯଥା—

ମାଛଲ ସେଣା ପକ୍ଷୀ ବାୟସା କ୍ଷୁଦ୍ର ଚଲ,
ଶୁକ ପିକ ଟେଣ୍ଟୁଆ ଯେ କୁମ୍ଭାଟୁଆ କୁଳ । ନୃ.ପୁ.ପ୍ର.ଭ.

ଟେଣ୍ଟୋଇ, ବି. (ଟିଟ୍ଟିଭ ଶବ୍ଦଜ) ପକ୍ଷିବିଶେଷ । ଯଥା—

ନଭେ ରବ ରବ ଯାଉଛି ଟେଣ୍ଟୋଇ
ସୁନୀଳ ଚଳକା ମୁଖେ । ପାର୍ବତୀ ।

ଟେବଲ, ବି. ( ଇଂରାଜୀ ଶବ୍ଦ ) ଲେଖନାଦିର ଆଧାର ।

ଟେର, ବି. (ଦେଶଜ) ପ୍ରାମାଣ୍ୟ; ଅନୁସନ୍ଧାନ ।

ଟେର, ଟେରକ, } ବିଂ. ସଂ. ଯାହାର ଚକ୍ଷୁ ବକ୍ର ହୋଇଥାଏ, ଟେରା ।

ଟେଗ, ବି. (ଟେରକ ଶବ୍ଦଜ) ବକ୍ରଦୃଷ୍ଟିଯୁକ୍ତ ବ୍ୟକ୍ତି, ଯାହାର ଗୋଟିଏ ଚକ୍ଷୁ ସାନ ଅନ୍ୟଟି ବଡ଼ ହୋଇଥାଏ । (ଦେଶଜ) ଏକପ୍ରକାର ଯବନିକା । ଯଥା—
ଉପରେ ଚନ୍ଦ୍ରାତପ ଦର୍ପଣର ଟେଗ । ନୃ.ପୁ.ପ୍ର.ଚ.

ଟେଗବାଡ଼, ବି. ( ଦେଶଜ ) ଯବନିକା ବା ବସ୍ତ୍ରାବରଣ, କନାର ବାଡ଼ ।

ଟେଗୀ, ବି. ସ୍ତ୍ରୀ. (ଟେରକ ଶବ୍ଦଜ) ଯେଉଁ ସ୍ତ୍ରୀର ଗୋଟିଏ ଚକ୍ଷୁ ବଡ଼ ଅନ୍ୟଟି ସାନ ହୋଇଥାଏ; ଯେଉଁ ସ୍ତ୍ରୀର ଦୃଷ୍ଟି ବକ୍ର ।

ଟେଳା, ବି. (ଦେଶଜ) ବଡ଼ ବଡ଼ ଖଣ୍ଡ; ଟେକା । ଯଥା—
ଟେଳା ମାଇଲେ କି ସ୍ୱାମି ଟଳଇ ମନ୍ଦର । ସା.ଭୂ.ସ.

ଟେଲିଗ୍ରାମ, ବି. (ଇଂରାଜୀ ଶବ୍ଦ) ତାରସମ୍ବାଦ ।

ଟେହିବା, ଟେଇବା, କ୍ରି. (ଦେଶଜ) ଉତ୍ତେଜିତ କରିବା; ମନ୍ଦକାର୍ଯ୍ୟରେ ପ୍ରବର୍ତ୍ତାଇବା ।

ଟୋକଣୀ, ବି. (ଦେଶଜ) ବଡ଼ ପିତଳହାଣ୍ଡୀ ।

ଟୋକା, ବି. ( ତୋକ ଶବ୍ଦଜ ) ପିଲା ବା ବାଳକ । ଯଥା—
ଟୋକାବେଳହୁଁ କାହ୍ନୁ ଘରବୁଡ଼ା । ଗୋ. ଭି.

ଟୋକାଇ, ଟୋକେଇ, ବି. (ଦେଶଜ) ବାଉଁଶ ବା ବେତନିର୍ମିତ ଆଧାରବିଶେଷ ।

ଟୋକିବା, କ୍ରି. ( ଦେଶଜ ) ଦୋଷ ଦେବା; ଚର୍ବଣ କରିବା; ଖାଇବା; ଖୁଣ୍ଟି କରି ଖାଇବା; ଝୁଣ୍ଟିବା; ବାରିବା ।

ଟୋକୀ, ବି. ସ୍ତ୍ରୀ. ( ତୋକ ଶବ୍ଦଜ ) ବାଳିକା; ଯୁବତୀ । ଯଥା—
ଟୋକୀ କେ ଉଦ୍ଧବ ଗୋପେ ତା ଶୁଣି,
ଟାହି ଟାହି ହେବେ ସୁରମଣୀ । ବି. ଚ. ମ.

ଟୋକେଇ, ବି. ସ୍ତ୍ରୀ. (ଦେଶଜ) ବେତାଦିନିର୍ମିତ ଆଧାରବିଶେଷ; ପୋଇଲି ବା ମାଚ ସ୍ତ୍ରୀ । ଯଥା—
ଟୋକେଇ ପୁଅ ଫୁଲରସ ଟେର ଭ୍ରମର ସ୍ୱାଙ୍କର ମୁହଁଆଡ଼କୁ ଚକୁଚ । ଶ. ନା. ସୁ. ସୁ.

ଟୋପ,ବି.(ଦେଶଜ)ଖାଲ; କାଗଗୁହ । ଯଥା—
ଚିପିଦେଲେ କଂସ ଆଗେ କେ ନୃଶଂସ
ନନ୍ଦ ବନ୍ଦୀ ହେବେ ଟୋପେ । ବି. ଚ. ମ.

ହାତୀ ଧରିବା ସକାଶେ ଯେଉଁ ଗର୍ତ୍ତ ଖୋଳାଯାଏ । ଯଥା—
ଟାଣ କି ଅଛ କହନ୍ତୁ ହରି,
ଟୋପ ଗଧା ମୋ ମନ କରି । ବି. ଚ. ମ.

ଟୋପର, ବି. (ଦେଶଜ) ବନପକ୍ଷିବିଶେଷ । ଯଥା—
ବାସର ଯୌବନ ଘୋଷିଲେ ଧପନେ ବନ ଟୋପର । ଉଷା ।
(ପ୍ରାକୃତ ଟୋପ୍ପର ଶବ୍ଦଜ) ପତ୍ର ବା ବାଉଁଶ ନିର୍ମିତ ମୁଣ୍ଡର ଢାଙ୍କୁଣୀବିଶେଷ; ମସ୍ତକାବରଣ ବା ଟୋପି (**Hat**); ମୁକୁଟ । ଯଥା—
ଯେ ନାମ ଭଜେ ଟଙ୍କଧର, ସେ ଅଟେ ଶ୍ୟାମ ଟୋପର ।
ତାହାକୁ ଶିରେ ଥିଲେ ଭର, ଶତ୍ରୁ ଦେଖିଣ ଭସ୍ମ କର । ଦା. ଭ.

ଟୋପା, ବି. ( ଦେଶଜ ) ଜଳାଦି ତରଳ ପଦାର୍ଥର ବିନ୍ଦୁ; ଜଳକବିନ୍ଦୁ ।

ଟୋପି, ବି. (ଦେଶଜ) ଜଳକାଦି ବିନ୍ଦୁ; ଶିରସ୍ତ୍ରାଣ ବା ମସ୍ତକାବରଣ; ଜଳାଦି ବିନ୍ଦୁ । ଯଥା—
ଯେହ୍ନେ ଶୂନ୍ୟରୁ ଖସିଣ ପଡ଼େ ଟୋପି ଜଳ । ନ. ପୁ. ପ୍ର. ଚ.
ଡ଼ାଲି ବା ଗୁଛ ଗୁଛ ଗୁଙ୍ଗୁଡ଼ି ।

ଟୋଲ, ବି. ( ବଙ୍ଗୀୟ ଶବ୍ଦଜ ) ସଂସ୍କୃତ ପାଠଶାଳା । ଯଥା—
ଢେର ଢଳୁ ଓଡ଼ିଶାରେ ପିଟା ଅଛି ଢୋଲ,
ବାଲେଶ୍ୱରେ ଫିଟାଇଛି ରାମଚନ୍ଦ୍ର ଟୋଲ । ଢ. ଭ୍ର.

ଟୋଳକ, ବି. (ଦେଶଜ) ବୋଇତକଖାରୁ ।

ଟୋଲି, ବି. (ଦେଶଜ) ପଲ୍ଲୀ ବା ଗ୍ରାମ; ଚେପା; ଧାତୁନିର୍ମିତ ଜଳପାତ୍ରାଦିର କୌଣସି ଅଂଶ ଆଘାତଦ୍ୱାରା ଦବିଗଲେ ତାହାକୁ ଟୋଲି କହନ୍ତି; କେତେକ ବୈଦିକ ବ୍ରାହ୍ମଣମାନଙ୍କର ଉପାଧିବିଶେଷ । ଯେପରି— ଟୋଲି ମିଶ୍ରେ ।

ଟୋଲି, ବି. (ଦେଶଜ—ଗଞ୍ଜାମୀ, ଏ ତେଲୁଗୁ ଶବ୍ଦ, କିନ୍ତୁ ଓଡ଼ିଆରେ ମଧ୍ୟ ବ୍ୟବହୃତ ହୁଏ) ଅଧପାହା ।

ଟୌ, ଟଉ, ବି. (ଦେଶଜ) ଉପଧାତୁବିଶେଷ ।



ଠ, ବ୍ୟଞ୍ଜନମାଳାର ଦ୍ୱାଦଶ ବର୍ଣ୍ଣ । ବି. ଶିବ; ମହାଧ୍ୱନି; ଚନ୍ଦ୍ରମଣ୍ଡଳ; ଶୂନ୍ୟ; ଇନ୍ଦ୍ରିୟଗୋଚର ।

ଠଉଁ, ଅଂ. (ଦେଶଜ) ଠାରୁ; ପଞ୍ଚମୀବୋଧକ ।

ଠଉର, ଠୌର, ବି. (ସ୍ଥିର ଶବ୍ଦଜ) ସ୍ଥିରତା; ଅନୁମାନ; ଠିକଣା ।

ଠଉରଠିକଣା, ବି. ବନ୍ଦୋବସ୍ତ ।

ଠଉରାଇବା, ଠଉରେଇବା, କ୍ରି. (ସ୍ଥିର ଶବ୍ଦଜ) ଖୋଜିବା; ଅନୁମାନ କରିବା; ସ୍ଥିର କରିବା ।

ଠଉରିବା, କ୍ରି. (ସ୍ଥିର ଶବ୍ଦଜ) ସ୍ଥିର ରହିବା । ଯଥା—

ନ ମିତ ନ ଜାତି ଶୀଳ, ନ କୁଳ ବରତଫଳ,
ଠଉର ନ ପାରେ ମୋ ମତି ରେ । ବି. ଚ. ମ.

ସ୍ଥିରୀକୃତ ହେବା । ଯଥା—ଦୋଷ ଠଉରିବା ।

ଠକ୍‌ଠକ୍, ଅଂ. (ଦେଶଜ) ଅନୁକରଣ ଶବ୍ଦବିଶେଷ; ଡେଇଁବା ।

ଠକ, ଠଗ, ବି. (ଦେଶଜ) ପ୍ରତାରକ ବା ପ୍ରବଞ୍ଚକ । ଯଥା—

ଠକ ନୋହେ ଗୁରୁ ବଇଷ୍ଣବ ଯେହୁ,
ଠିକେ ଏଥି ମର୍ମ ଜାଣି ପାରିବେଟି ସେହୁ । ବି.ଚ.ମ.

ବିଂ. କପଟୀ; ନିଷ୍ଠୁର; ଖଳ । ଯଥା—

ଠକପଣିଆ ନ ଆଚର, ମୋ ବେଦନାକୁ ବିଚାର,
ଅକପଟ ଜ୍ଞାନ ବିଧି ତୋତେ ଉଚିତ ରେ । କ.ଚ.ଚ.

ଠକଠକ, ବି. (ଦେଶଜ) ବିପଦ; ଉତ୍ପାତ; ଝଞ୍ଜଟ ।

ଠକା, ବି. (ଦେଶଜ) ଠକିବା; (ସମ୍ବଲପୁରରେ) ଠିକ୍ ।

ଠକାଠକ, ବି. (ଦେଶଜ) ଭଣ୍ଡାଭଣ୍ଡି ।

ଠକାଇବା, ଠକେଇବା, କ୍ରି. (ଦେଶଜ) ପ୍ରତାରିତ କରାଇବା; ଅବଲମ୍ବନ କରିବା; କାର୍ଯ୍ୟ ଚଳାଇବା ନିମନ୍ତେ କୌଣସି କାର୍ଯ୍ୟ [ଯେନକେନପ୍ରକାରେ ସମ୍ପନ୍ନ କରିବା ।

ଠକାମି, ଠକାମୀ, ବି. (ଦେଶଜ) ପ୍ରବଞ୍ଚନା; ପ୍ରତାରଣା ।

ଠକାର, ବି. (ଦେଶଜ) ଠକପଣ । ଯଥା—

ଠିକେ ଜାଣିତ ଠିକେ କ ରତିକାତ ବର୍ତ୍ତିଲ୍‌କୁ ଚେ,
ଠକାର ପର ଠକାର ପରିହରି ନ ପାରୁ ନିଷ୍ଟେ ।
କୋ. ବ୍ର. ସୁ.

କପଟ । ଯଥା—

ଏତେ ବୋଲି ଠକାରେ ନିଦ୍ରା ଗଲେ ହରି,
ଲକ୍ଷ୍ମୀ ମିଳଲେ ଯାଇ ଚନ୍ଦନ ପୁଷ୍ପ ଧରି । ନୃ.ପୁ.ଦ୍ୱି.ଚ.

ଠକିବା, କ୍ରି. (ଦେଶଜ) ପ୍ରତାରିତ କରିବା ।

ଠକ୍‌କୁର, ବି. ସଂ. ଦେବତାଙ୍କ ପ୍ରତିମା, ଠାକୁର ।

ଠଗି, ଠଗୀ, ବିଂ. (ଦେଶଜ) ଛଦ୍ମବେଶଧାରୀ ।

ଠ-ଠା-ଠି, ବି. (ଦେଶଜ) ଅତ୍ୟନ୍ତ ଘନାବସ୍ଥା ।

ଠଣ, ବି. (ଦେଶଜ) ଅଙ୍ଗର ଶୋଭା । ଯଥା—

ଠଣ ସେ ପୁଣ ଏ ପରି ରେ । ଲ. ବ.

ଗଠନ । ଯଥା—

ଠଣ ସୁନ୍ଦର ଶିରୋମଣି,
ଠିକେ କମଳା ଯାର ରାଣୀ । କ. କୋ.

ଠଣଠଣ, ଠନଠନ, ଠଣଠାଣ, ଅଂ. (ଠଂଠଂ ଶବ୍ଦଜ) ଟଙ୍କା ବାଜିବାର ଅନୁକରଣ ଶବ୍ଦବିଶେଷ ।

ଠଣା, ବି. (ସ୍ଥାନ ଶବ୍ଦଜ ପ୍ରାକୃତ ଠାଣରୁ ଜାତ) ପ୍ରତିହାରର ସ୍ଥାନ । ଯଥା—

ବଣାରୁ ଦନ୍ତ ବାତ ଠଣାରୁ ପଳାୟିତ
ଇତର କପି ଇତସ୍ତତ । ବୈ. ବି.

ବଦ୍ଧାଙ୍ଗୁଳଦ୍ୱାରା ମସ୍ତକାଘାତବିଶେଷ । ଯଥା—

ଠଣାଠୁକି ଡାପ ଜ୍ଞାସ, ମୁଣ୍ଡେ ମନମଥ ପାଶ,
ବନ୍ଧନରୁ କରନ୍ତୁ ପିନା ମୋତେ ମୋଚନ ରେ । କ.ଚ.ଚ.

କାନ୍ଥଖୁଣ୍ଟି ବା କାନ୍ଥଖୋଳା ।

ଠଣୁନ, ବି. (ଦେଶଜ) ଅବ୍ୟକ୍ତ ଶବ୍ଦ; ରିକ୍ତତାବୋଧକ ।

ଠବର୍ତ୍ତୁଳ, ବିଂ. (ଦେଶଜ) ଠ ପରି ଗୋଲ ବା ଅତି ଗୋଲ । ଯଥା—

ଠିକେ ଠବର୍ତ୍ତୁଳ ଚନ୍ଦ୍ରାନନ ତୋ ଚଉରେ ।
କୋ. ବ୍ର. ସୁ.

ଠମକ, ବି: (ଦେଶଜ) ଭାବହାବ, ପ୍ରାଗଲ୍ଭ୍ୟ ।

ଠରା, ବି. (ଦେଶଜ) ସଙ୍କେତଦ୍ୱାରା ମନୋଭାବ କହିବା ।

ଠରାଠରି, କ୍ରି. (ଦେଶଜ) ସଙ୍କେତ କରାକରି । ଯଥା—

ଆମ୍ଭକୁ ନ କହିଣ, ଠରାଠରି ହୋଇଣ
ଅଗମ୍ୟ ବନରେ ପଶିଲେ । ବ. ରା.

ଠସ, ବି. (ଦେଶଜ) ଗୁଞ୍ଜ; ପରିହାସ । ଯଥା—

ଶଠ ଦୁଷ୍ଟ ଧୃଷ୍ଟ ଲମ୍ପଟ ନାୟକ, ବିଦେଶକୁ ଯିବା କଥା,
ସତ କି ଅବା ଠସ ।

ଠସକାଇ, ବି. (ଦେଶଜ) ଅଶକ୍ତତା ।

ଠସା, ବି. (ଦେଶଜ) ଟାପରା; ଗୁଞ୍ଜ ।

ଠଁ, ଠା, ଠାଆଁ, ଠାଆ, ବି. (ସ୍ଥାନ ଶବ୍ଦଜ ପ୍ରାକୃତ) ଭୋଜନ ସ୍ଥାନ । ଯଥା—

ଭୋଜନ ମଧ୍ୟରେ ବିଜେ କଲେ ଭାବଗ୍ରାହୀ,
ଠାଁସଜ ନିର୍ମାଣ କରିଅଛନ୍ତି କମଳାଈ । ନୃ. ପୁ. ତୃ. ତ.

ସ୍ଥାନ । ଯଥା—

ଆନ ଠାକୁ ନ ବାହାରିଲା ଯୋଗୀ,
ହୃଦ ଲଖି କଲା କସ ଦେଖି । କୋ. ବ୍ର. ସୁ.

ଜାଗା ବା ପାଏ; ଭୋଜନ ସ୍ଥାନରେ ମୁରୁଜଦ୍ୱାରା ପ୍ରସ୍ତୁତ ପ୍ରକୋଷ୍ଠ; ଭୋଜନ ।

ଠାଅପିଡ଼ା, ବି. (ଦେଶଜ) ଭୋଜନସ୍ଥାନ ପ୍ରସ୍ତୁତ କରିବା । ଯଥା—

ଠାଅପିଡ଼ା କରି କୃଷ୍ଣଙ୍କୁ ଘେନିଗଲେ,
ଭଦ୍ରଅଙ୍ଗେ ଘଷୁ ବଢ଼ାବଢ଼ି କଲେ । କୃ.ଭା.ଉ.ପ.

ଭୋଜନ ।

ଠାଁପୁରୁ, ବିଂ. (ଗଡ଼ଜାତ ଶବ୍ଦ) ସମୁଦାୟ ।

ଠାଁସଜ, ଠାଆଁସଜ, ଠାଆସଜ, ଠାସଜ, } ବି. (ଦେଶଜ) ଭୋଜନପାତ୍ରାଦିସମୂହ । ଯଥା—

ତଦୁତ୍ତରୁ ଶୁଣି ଯାହା ଦେଲେ ପ୍ରଜାପତି,
ଠାଆଁସଜ କରି ସେହୁ ବନ୍ଧୁ ପରଶନ୍ତି । ନୃ.ପୁ.ପ୍ର.ତ.

ଠାଇଁ, ଠେଇଁ, } ବି. (ପ୍ରାକୃତ ଠାଇଁ ପଦଜାତ) ଧୂଆଧୋଇ ବା ଶୂଦ୍ରାଦି ବିଧବାର ପୁନର୍ବିବାହ । ଅଂ. ନିକଟରେ ବା ପାଖରେ । ଯଥା—

ଥିଲା ତା ମାଇପ ନାମ ଅଲୁଈ,
ସବୁ ଅଲକ୍ଷଣ ଥାନ୍ତି ତା ଠାଇଁ । ହ୍ନା. ତ.

ସ୍ୱାଙ୍କଠେଇଁ ମୋର ଭାଇସ୍ନେହ ରହୁଚି । ଶ.ନାଟକ.

ସ୍ଥାନରେ । ଯଥା—

ବ୍ୟାସ ଋଷି ଜନମ ହେଲେ କେଉଁଠାଇଁ । ନା.ର.ଗୀ.

ଠାଉକଆ, ଠାଉଆ, ବି. (ଦେଶଜ) ଚୈର ।

ଠାଏଁ, ଠାଏ, ଅଂ. (ପ୍ରାକୃତ ଠାଇଁ ପଦଜାତ) ସ୍ଥାନରେ । ଯଥା—

ଏ ସୃଷ୍ଟି ରହେ ସର୍ବଠାଏଁ,
ତୁ ଯେସନ୍ତେ ବୁଲୁ ନାନାଦେହେ । ଭା. ଦ. ସ୍କ.

ଏକସ୍ଥାନରେ; ସପ୍ତମୀ ବିଭକ୍ତି ପ୍ରତ୍ୟୟ । ଯଥା—

ଏଥକୁ ଗୋଟିଏ କଥା ଅଛଇ ଉପାୟେ,
ଉତ୍ତମ ସାଧୁ ଯେବେ ମିଳଇ ମୂର୍ଖଠାଏ । ନୃ.ପୁ.ଦ୍ୱି.ତ.

ଠାକରା, ବି. (ଦେଶଜ) ଏକପ୍ରକାର ବାଣକାଷ୍ଠ ଖଞ୍ଜି ମଝିରେ ଗାତ କରି ତହିଁରେ ଦାରୁ ଖୁନ୍ଦି ଏ ବାଣ ତିଆରି କରନ୍ତି ।

ଠାକିବା, କ୍ରି. (ଦେଶଜ) ସ୍ଥିର ହେବା । ଯଥା—

ମୂଳଶୂନ୍ୟ ପରେ ବାସ, ଠାକିଛି ପରମହଂସ । ଜ୍ଞା.କୋ.

ଠାକୁର, ଠକୁର, ବି. (ପ୍ରାକୃତ ଠକ୍କୁରୋ ଶବ୍ଦଜ) ଦେବତା । ଯଥା—

କୋଟିବ୍ରହ୍ମାଣ୍ଡରେ ଏମନ୍ତ ଠାକୁର
ଥିବାର ଶୁଣିଛ କାହିଁ । ର. କ.

ଶ୍ରେଷ୍ଠ ବା ମାନ୍ୟ ବ୍ୟକ୍ତି; ପ୍ରଭୁ । ଯେପରି—
ଠାକୁର ରାଜା ।

ଠାକୁରକୋଠି, ଠାକୁରଘର, ଠାକୁରବାଡ଼ୀ, } ବି. (ଠକ୍କୁର ପ୍ରକୋଷ୍ଠ ଶବ୍ଦଜ; ଠକ୍କୁର ଗୃହ ଶବ୍ଦଜ; ଠକ୍କୁର ବାଟୀ ଶବ୍ଦଜ) ଦେବାଳୟ ।

ଠାକୁରବାପା, ବି. ( ଠକ୍‌କୁର-ବପ୍ରା ଶବ୍ଦଜ) ପିତାମହ ।

ଠାକୁରମା, ବି. ସ୍ତ୍ରୀ. (ଠକ୍‌କୁର-ମାତା ଶବ୍ଦଜ) ପିତାମହୀ ।

ଠାକୁରାଣୀ, ବି. ସ୍ତ୍ରୀ. ( ଦେଶଜ ) ଦେବୀ । ଯଥା—

ଠାକୁର ଠାକୁରାଣୀଙ୍କ ପଦାମ୍ବୁଜ ଧ୍ୟାନରଙ୍କ । କ.ଚ.ଚ

ରାଣୀ ବା ସ୍ୱାମିନୀ; ଗୃହିଣୀ; ବସନ୍ତ ରୋଗ; ଗୋରୁମାନଙ୍କୁ ହେବା ରୋଗବିଶେଷ ।

ଠାକୁରାଣୀଲାଗିବା, ବି. (ଦେଶଜ) କୌଣସି କୌଣସି ଲୋକଙ୍କଠାରେ ଠାକୁରାଣୀ ଆବିର୍ଭୂତ ହେବା ।

ଠାକେରା, ବିଂ. (ଦେଶଜ) ଝାଙ୍ଗରା । ଯଥା—

ଠାକେରା ବୁଢ଼ା ନିରେଖ ନିରମାଖି ଜନ,
ଏହାକୁ ଦୋହିତା ଦେଲେ କେମନ୍ତ ରାଜନ । ମଂ. ଘ.

ଠାଟ, ଠାମ, ବି. (ଦେଶଜ) ଭଙ୍ଗୀ । ବିଂ. ମନୋହର ବା ସୁଦୃଶ୍ୟ ।

ଠାଠିକ, ବିଂ. (ଦେଶଜ) ସୁନ୍ଦର । ଯଥା—

ଠାଠିକ ଦିଶେ ଅମ୍ବୁଜରୁ ଖସେ କି
ଅବମୀକ ବକାଳିକା ରେ । ଲ. ବ.

ଠାଣା, ବି. (ସ୍ଥାନ ଶବ୍ଦଜ, ପ୍ରାକୃତ ଠାଣ ଶବ୍ଦରୁ ଜାତ) ଜଗିବା ସ୍ଥାନ ।

ଠାଣି, ଠାଣୀ, ଠାଣିମାଣି, } ବି. (ଦେଶଜ) ଅଙ୍ଗଭଙ୍ଗୀ । ଯଥା—

ରହିଲା ଅଣଆୟୁଦ୍ଧେ ସେ ସେହି ଠାଣିରେ । ଲ. ବ.
ଠାଣିମାଣିରେ ଉଭା ହୋଇଲା ଯେ ଅର୍ଜୁନ,
ବାବୁ ମୋ ଅସୂୟା ଘେନ ଚାଖ ବୋଲେ ଦ୍ରୋଣ ।
ସା. ଭ. ଆ.

ଆକୃତି । ଯଥା—

ଭଲ ସେ ରୂପ ଠାଣି କାହିଁ ନାହିଁ ରେ । ସଙ୍ଗୀତ ।

ଠାପୁଆ, ବିଂ. (ଦେଶଜ) ଅଳସୁଆ, ମଠୁଆ । ଯଥା—

କେହି ବା ଠାପୁଆପଣେ ଧର୍ମଧ୍ୱଜ ପର,
ପରଠାରୁ ସଦା ଅର୍ଥଶୋଷଣପ୍ରୟାସୀ । ମ. ଧା.

ସାମାନ୍ୟ, ଯେଉଁ ଲୋକ କୌଣସି ଛଳରେ କାର୍ଯ୍ୟ କରେ ନାହିଁ ।

ଠାପୋଇ, ବି. ସ୍ତ୍ରୀ. (ଦେଶଜ) ଅଳସୀ ସ୍ତ୍ରୀ ।

ଠାବ, ବି. (ସ୍ଥାନ ଶବ୍ଦଜ ପ୍ରାକୃତ ଠାଁ ଶବ୍ଦଜାତ) ସ୍ଥାନ । ଯଥା—

କୁଞ୍ଜକାନନରେ ଯେତେ ବିନୋଦ ଠାବ । ର. କ.

ଠିକଣା । ଯଥା—

ହୃଦପଦ୍ମେ ବିଗ୍ରହଣ ମୂର୍ତ୍ତି କଲି ଠାବ,
ଏହା ମୋତେ ପ୍ରସନ୍ନେ କହିବା ପଦ୍ମନାଭ । ନା.ର.ଗୀ.

ଠାବକରିବା, କ୍ରି. ଅନୁସନ୍ଧାନଦ୍ୱାରା ସ୍ଥିର କରିବା ।

ଠାର, ବି. (ଦେଶଜ) ସଙ୍କେତ; ଅପର ଲୋକ ଯେପରି ବୁଝି ନ ପାରିବ ସେହିପରି ଭାଷାରେ କଥା କହିବା । ଯଥା— ଶଶିଠାର, ଫୁଲଠାର ।

ଠାରଠୁର, ବି. (ଦେଶଜ) ଅନ୍ୟୋନ୍ୟ ନେତ୍ର-ସଙ୍କେତ । ଯଥା—

ଠାରଠୁର କଥା ହୋଇ ସରସରେ,
ଆଚମନ କରି ସେଠାରୁ ଉଠିଲେ । କୃ.ଖି.ଆ.ପ.

ଠାରିବା, କ୍ରି. (ଦେଶଜ) ସଙ୍କେତ କରିବା । ଯଥା—

ଠାରିଦେଲେ ନେତ୍ରାଞ୍ଚଳେ । କ. ଚ. ଚ.

କାଗଜ ବା ତାଳପତ୍ରରେ ଟିପି ରଖିବା; ସୂଚନା କରିବା । ଯଥା—

କହିବା ଆଗେ ବୋଲିଣ ଯେତେ ଅଛୁ ଠାରି,
ଏହିଠାରୁ ଶୁଣ ତୁମ୍ଭେ ଏ କଥା ପଚାରି । ନୃ.ପୁ.ପ୍ର.ତ.

ଠିଁ, ଠି, ଅଂ. (ଦେଶଜ) ଠାରେ । ଯଥା—

ଦ୍ରୁପଦ ବୋଇଲେ ପଣ୍ଡା କହିଲ ତ ଅମାତ,
ଏକ ସ୍ତ୍ରୀ ଲୋକ କେଉଁଠି ଅଛୁ ପାଞ୍ଚ ପତି । ସା. ଭ. ଆ.

ଠିଅ, ବି. (ଦେଶଜ) ଅଭିମାନ ବା ଆଧିକ୍ୟ । ଯଥା—

ଆଜ ଏଣିକ ରାଜା ଅଛନ୍ତି କେତେ କହ,
ତାଙ୍କୁ ବର ଆଣିଲେ ରହିବ ମୋର ଠିଅ । ନୃ.ପୁ.ଦ୍ୱି.ତ.

ଡ଼ିରା, ଅବଲମ୍ବନ ।

ଠିଆ, ବି. (ପ୍ରାକୃତ ଟିଆ ଶବ୍ଦଜ) ଉଭା ହେବା । ବିଂ. ଉଭା ହୋଇଥିବା; ସଳଖ ।

ଠିଅଠାଣି, ବିଂ. (ଦେଶଜ) ସୁଗଠିତ; ମନୋହର । ଯଥା—

ଗୋବିନ୍ଦ ବୋଇଲେ ସ୍ୱାମି ଦେଖ ହଳପତ୍ର,
ଶୁରବର ଅର୍ଜୁନର ଠିଅଠାଣି ମୂର୍ତ୍ତି । ସା.ଖ୍ର.ଆ.

ବି. ଠିଆହେବାର; ମନୋହର ଛଟା ।

ଠିଆଚଡା, ବି. (ଦେଶଜ) ଲମ୍ବକରି ଲଟେଇବା ଖଣ୍ଡକ । ଯଥା--

ଗୋମସ୍ତେ ଦେଲେ ଠିଅଚଡା,
ଯେ ପ୍ରଭୁ ଗୋବ୍ରାହ୍ମଣହିତା । ଖ୍ର. ଦା. ସ୍କ.

ଠିକ, ବି (ଦେଶଜ) ନିଷ୍ଟୟ । ଯଥା—

ଠିକେ ମୁଁ କହୁଛୁ ତୋତେ, ଠାବ ଦେଇଥିବୁ ଶତ୍ରୁ ।

ସମଷ୍ଟି । ବିଂ. ଉତ୍ତମ ବା ଭଲ । ଯଥା—

ଠିକ ଯେତେ ନେତେ ପାତକାଁଟି ନାଗ
ନାଗନାରଜ ଯେମନ୍ତ । ବ. ଚ. ମ.

ନିଶ୍ଚିତ । ଯଥା—ତାହା ଠିକ କର ।

ଠିକଣା, ବି. (ଦେଶଜ) ନିଦର୍ଶନ; ଠାବ; ନିଷ୍ଚୟ ।

ଠିକଣବା, କ୍ରି. (ଦେଶଜ) ନେନ ନିର୍ନିମେଷ ହେବା; ଝଲକ ପଡିବା । ଯଥା—

ଠିକର ପଡୁଛୁ ଠାବେ ଠାବେ ନେନ
ହେଣ ଏ ଚନ୍ଦ୍ରମା ହାଟ । ପାବଳୀ ।

ଠିକା, ବି. (ଦେଶଜ) ଅନ୍ତରକ୍ତ; ଠୁଳ ବା ମୋଟ; ଚୁକ୍ତି ବା ନିଷ୍ପତ୍ତି । ବିଂ. ଅସ୍ଥାୟୀ (temporary) ।

ଠିକ୍କା, ବି. (ଦେଶଜ) ତାସଖେଳରେ ୧ ସଂଖ୍ୟକ ପତ୍ର ।

ଠିକାଠିକା, ବିଂ. (ଦେଶଜ) ଗୋଟିଏ ଗୋଟିଏ ବା ବିରଳ ।

ଠିକବା, କ୍ରି. (ଦେଶଜ) ଅନ୍ତରକ୍ତ ହେବା, ସମ୍ବନ୍ଧକ ହେବା; ନିଶ୍ଚିତ ହେବା । ଯଥା—

ଠିକେ କରତ ଠିକେ କ ରଚନାତ ବର୍ତ୍ତୁଳ କୁଚେ,
ଠକାର ପର ଠକାର ପରହର ନ ପାରୁ ନିଷ୍ଠେ ।
କୋ. ବ୍ର. ସୁ.

ବାଧା ପାଇବା । ଯଥା—

ଥରେ କାର୍ଯ୍ୟକ୍ଷେତ୍ରରେ ପଶି ନ ଠିକବା ପର୍ଯ୍ୟନ୍ତ ।
ଉ. ସା. ୧୧. ୪.

ଠିକର, ବି. (ଦେଶଜ) ତାସଖେଳର ଏକପ୍ରକାର ରଙ୍ଗ ।

ଠୁକ୍‌ଠୁକ୍, ଅଂ. (ଦେଶଜ) ଅନୁକରଣ ଶବ୍ଦବିଶେଷ । ବି. ଧୀର (ଗୃଳ) । ଯଥା—

ଠୁକ୍ ଠୁକ୍ ଗୃଳକ, ସର ଲୁହେ ଯୋଡ଼ା ପାଲଙ୍କି ।

ଠୁକା, ବି. (ଦେଶଜ) ଧୀରଭାବରେ ଆଘାତ କରିବା ।

ଠୁକିବା, ଠୁଙ୍କିବା, କ୍ରି. (ଦେଶଜ) ଅଙ୍ଗୁଳି ବା କରତଳଦ୍ୱାରା ଆଘାତ କରିବା । ଯଥା—

କଟ୍‌ସନ୍ଧ ପ୍ରଣ୍ଣ ପର୍ଭିଣୀ କାମନାଗରା ଠୁଙ୍କଇ ହେତହୃ ।
କୋ. ବ୍ର. ସୁ.

ପ୍ରହାର କରିବା ।

ଠୁକେଇବା, କ୍ରି. (ଦେଶଜ) ପ୍ରହାର କରିବା; ଧୀରଭାବରେ ଆଘାତ କରିବା ।

ଠୁଙ୍ଗା, ବିଂ. (ଦେଶଜ) ଶାଖାପତ୍ରାଦିବିହୀନ (ବୃକ୍ଷ), ମୁଣ୍ଡା; ଏକୁଟିଆ ।

ଠୁଣା, ଠୁଣୁକା, } ବିଂ. (ଦେଶଜ) ବାଙ୍ଗର, ଟ୍ଟଣ୍ଠ ବା ହୀନ ।

ଠୁଣୁଠୁଣୁକା, ଠୁଣୁଠୁଣୁକିଆ, } ବିଂ. (ଦେଶଜ) ସାମାନ୍ୟ, ସାଧାରଣ । ବି. ସାଧାରଣ ଉପାୟ ।

ଠୁରା, ବିଂ. (ଦେଶଜ) ଖର୍ବ । ଯଥା—

କ ବେଙ୍ଗ—ଠୁରା ବେଙ୍ଗ । ଉ. ସା.

ଠୁଳ, ବିଂ. (ସ୍ଥୁଳ ଶବ୍ଦଜ) ଏକତ୍ରିତ; ଠିକ । ଯଥା—

ଠୁଳେ ଗଙ୍ଗାରୁ ଜଳ ଅଣି,
ଘନ କ ପତନ କରଇ ଧରାରେ । ଲ. ବ.

ମୋଟ ବା ସମଷ୍ଟି । ଯଥା—

ଭୂମ୍ଭେ କହିଲ ଠୁଳ କରି,
ଯେ ସ୍ଥାନମାନ ଯେ ବଗୃର । ବ. ପୁ.

ଠୁଲି, ବି. (ଦେଶଜ) ମସ୍ତକାବରଣ ହାଡ଼ ଅର୍ଥାତ୍ ଖପୁରି ।

ଠେଁ, ଠେ, } ଅଂ. (ସ୍ଥାନେ ଏହି ପଦଜାତ, ପ୍ରାକୃତ ଠେଁ ପଦରୁ ସଜାତ) ସ୍ଥାନରେ ।

ଠେକ, ବି. (ଦେଶଜ) ଅବଲମ୍ବନ, ଡିରା । ବିଂ. ଉଚ୍ଚ । ଯଥା—

ମଥା ଉପରେ କେଶ ବାନ୍ଧିଣ ଠେକ ଜୁଡ଼ା,
କଟିରେ ଢିନବାସ କରିଛନ୍ତି ଦୋସଡ଼ା । ନୃ.ପୁ.ପ.ଚ.

ଠେକରା, ବିଂ. (ଦେଶଜ) ଠେକ; ଗୃପସରି । ଯଥା—
ହୀରା ଠେକରା ଘରା ରଜ,
ଝଲକା ସୁମଣ୍ଡଣି ହେଜ । କୋ. ବ୍ର. ସୁ.

ଠେକରା, ବି. (ଦେଶଜ) ପାକ ନିମନ୍ତେ ହାଣ୍ଡି ।

ଠେକା, ବି. ( ଦେଶଜ ) ପାଗପ୍ରାପ୍ତ ମୁଣ୍ଡରେ ବାନ୍ଧିବା ଲୁଗା ।

ଠେକି, ଠେକା, ବି. (ଦେଶଜ) କ୍ଷୁଦ୍ର ମୃତ୍ତିକା-ଘଟବିଶେଷ ।

ଠେକୁଆ, ବି. (ଦେଶଜ) ଶଶକ, ଖୁଦୁର ।

ଠେଙ୍ଗ, ବି. (ଦେଶଜ) ଉଚ୍ଚ ଭୂମି; ମନୁଷ୍ୟର କଟିତଳର ହାଡ଼ ।

ଠେଙ୍ଗା, ବି. (ଦେଶଜ) ବଡ଼ ବାଡ଼ି । ଯଥା—
କରେ ଘେନିଛୁ ଠେଙ୍ଗାଗୋଟି,
ମୋତେ ଏ ପକାଇବ ପିଟି । ଦା. ର.
ଜ୍ୱରବିଶେଷ । ଯେପରି—ଠେଙ୍ଗା ଜର ।

ଠେଙ୍ଗାଇବା, } ବି. ( ଦେଶଜ ) ଠେଙ୍ଗାରେ
ଠେଙ୍ଗେଇବା, } ପିଟିବା ।

ଠେଙ୍ଗା, ଠେଙ୍ଗି, ବି. (ଦେଶଜ) ବାଡ଼ିଆବାଡ଼ି; ଅନ୍ୟୋନ୍ୟ ଠେଙ୍ଗାରେ ମାଡ଼ ମାରିବା ।

ଠେଙ୍ଗିଣି, ଠେଙ୍ଗୁଣୀ, ବି. ସ୍ତ୍ରୀ. (ଦେଶଜ) ସାନ ଠେଙ୍ଗା; ଗୋରୁ ପ୍ରଭୃତିଙ୍କର ପିଠିର ହାଡ଼ ।

ଠେଙ୍ଗୁ, ବି. (ଦେଶଜ) କଟିତଳ ହାଡ଼ । ଯଥା—
ଘରେ ବାହାରେ ଯେ ପାଏ
ସେ ଠେଙ୍ଗୁରେ ଗୋଟେ ହାଣିଦିଏ । ଛ ସା.

ଠେଲ, ବି. (ଦେଶଜ) ଭିଡ଼ । ଯଥା—
ସବୁଦିନେ ଅତିଥିଙ୍କ ଲାଗିଥାଏ ଠେଲ,
ଜଣାଯାଏ ଏହା ହେବ ପବ୍ଲିକ ହୋଟେଲ । ଉ. ଭ୍ର.

ଠେଲ୍, ବି. (ଦେଶଜ) ପେଲିବା ।

ଠେଲ୍‌ଠେଲି, ବି. (ଦେଶଜ) ପେଲ୍‌ପେଲି ।

ଠେଲିବା, କ୍ରି. ( ପ୍ରାକୃତ ଠେଲ ଧାତୁଜ ) ପେଲିବା । ଯଥା—
ଗହଳେ ଗଲେ ପେଲ୍‌ପେଲି,
ସ୍ୱାମିଙ୍କି ପକାଇବେ ଠେଲି । ଖ. ଦ. ସ୍କ.

ଠେଁସ, ଠେସ, ବି. (ଦେଶଜ ) ଅବଲମ୍ବନ; ପେଲ୍; ଧକ୍କା ।

ଠେସଦେବା, କ୍ରି. (ଦେଶଜ) ଅବଲମ୍ବନ ବା ଆଶ୍ରୟ କରିବା, ଦେବା ।

ଠେଁସା, ଠେସା, ବି. ( ଦେଶଜ ) ପେଲ୍; ଅତିକ୍ରମ । ବିଂ. ଅଳସୁଆ ।

ଠେସିବା, ଠେଁସିବା, } କ୍ରି. ( ଦେଶଜ )
ଠେସେଇବା, } ପେଲିବା । ଯଥା—
କୁଚମନ୍ଦର ଠେଁସି ହୃଦର ଦିଅ ମୋ ଦର ନାହିଁ । ଲ୍ଲ. ବ.
ଆଘାତ କରିବା । ଯଥା—
ଉରେ ଉରଜ ଦେଇଥାଇ ଠେସି । ପ୍ରେ. ସୁ. ନି.
କହିଲେ ନ ମାନିବା । ଯଥା—
ବଡ ଲୋକ ବାକ୍ୟ କହିଲେ ଯେ ଜନ ଠେଁସେ,
ଛନ ବରଷ ମଧ୍ୟେ ପଡଇ ଦଣ୍ଡ ଦୋଷେ । ନୃ.ପୁ.ସ.ତ.

ଠୋ, ଠୋଓ, ଠୋଠୋ, ଅଂ. ( ଦେଶଜ ) ଅନୁକରଣ ଶବ୍ଦବିଶେଷ । ଯଥା—
ଠୋକର ଛୁଣ୍ଡାଇ ଦେ ନା । କ. ଚ. ଚ.
ଯିବାଘାତେ କାଣ୍ଡିମାନେ ଠୋଓ ରଡ଼ି,
ନାଦା କଲେ ପ୍ରଳୟକାଳ ଘଡଘଡ଼ି । କୃ. ଖ. ଖି. ପ.
କାଠ ହାଣୁ ଠୋ ଠୋ, ବାଘ ମାମୁ ରୁ ଅଲେଇସି ଯା ।
ଉତ୍କଳକାହାଣୀ ।

ଠୋକ, ବି. (ଦେଶଜ) ସମଷ୍ଟି ।

ଠୋକର, ଠୋକରା, ବି. ( ଦେଶଜ ) ବାଧା; ଆଘାତ; ଗୃପୋଡ଼ା ।

ଠୋଠୋ, ଠୋଠା, ଅଂ. (ଦେଶଜ) ଅନୁକରଣ ଶବ୍ଦବିଶେଷ । ଯଥା—
ସେ ଅସ୍ତ୍ରେ ଠୋଠୋ ହୋଇ ଗୁଣରୁ ବାହାରିଲେ,
ଅର୍ଜୁନଙ୍କ ଅସ୍ତ୍ରକୁ ସେ କିଛି ନ ହାରିଲେ । କୃ. ଖ. ବ.

ଠୋଙ୍ଗଠକ, ଅଂ. (ଦେଶଜ) ଅନୁକରଣ ଶବ୍ଦ-ବିଶେଷ; ଠୋକନ ।

ଠୋଲକା, } ବି. (ଦେଶଜ) ପିଷ୍ଟକବିଶେଷ ।
ଠୋଲ୍ଲୋକା, } ବିଂ. ଫୁଲ୍ ।

ଠୋଲ୍, ଠୋଲି, ବି. (ଦେଶଜ) ପଦାଧାର, ଦନା । ଯଥା—
ଏକ ନଗରରେ ଯାଇ ପ୍ରବେଶ ହୋଇଲ,
ପଲାଶ ପତ୍ରର ଠୋଲ୍ଲ ଗଡ଼ିଏ ସିଝିଲ । ବେ. ପ.

ଠୋସ, ବିଂ. (ଦେଶଜ) ଟାଣ ବା ଦମ୍ଭ ।



ଡ, ବ୍ୟଞ୍ଜନମାଳାର ତ୍ରୟୋଦଶ ବର୍ଣ୍ଣ । ବି. ଶିବ; ଶବ୍ଦ; ଗୃଷପକ୍ଷୀ: ତ୍ରାସ; ବାଡ଼ବାଗ୍ନି: ବାଦ୍ୟଯନ୍ତ୍ରବିଶେଷ । ସ୍ତ୍ରୀ. ଡ଼ାକିନୀ ।

ଡ଼ଂସିବା, କ୍ରି. (ଦଂଶନ ଶବ୍ଦଜ) କାମୋଡ଼ିବା ।

ଡ଼ାଇଁ, ଡୁଇଁ, ବି. (ଦେଶଜ) ଖେଳରେ ହାରିବା ବ୍ୟକ୍ତି ।

ଡଉଁରିଆ, ଡେଉଁରିଆ, } ବି. (ଦେଶଜ) ହସ୍ତାଭରଣ ଓ କଣ୍ଠାଭରଣବିଶେଷ । ଯଥା—

କରତଟେ ଡଉଁରିଆ ମାଳ ବାନ୍ଧି । ର. କ.

ଡଉଲ, ଡୌଲ, } ବିଂ. (ଦେଶଜ) ସୁନ୍ଦର । ବି. ଆଚରଣ; ଛାନ୍ଦ; ଗଠଣ ।

ଡ଼କରା, ବି. (ଦେଶଜ) ଆହ୍ୱାନ ।

ଡ଼କା, ବି. (ଦେଶଜ) ଚହଳ । (କଅାଁଳା ଶବ୍ଦ ଦେଖ) ଆହ୍ୱାନ; ଚିତ୍କାର ଶବ୍ଦ; ଜନ୍ଦନ । ଯଥା—

ଡ଼କା ଦେବା ଧନେ ଅଣସ୍ଥେ ଭତ୍ତ୍ରନେ
ଦେଖିଲୁ ଶକଟ ଦଶା । କ. ଚ. ଚ.

ଡ଼କାଇତ, ଡ଼କାଏତ, ଡ଼କେଇତ, } ବି. (ହିନ୍ଦୀ) ଖଣ୍ଟ ବା ଚୋର । ଯଥା—

କେଉଁ ଅରଣ୍ୟରେ କେଉଁ ଗୋପୀଠାରେ
ନୋହିଛୁ ଡକାଏତପଣ । ର. କ.

ଡ଼କାଇତି, ଡ଼କାଇତି, ଡ଼କାଇତପଣ, } ବି. (ହିନ୍ଦୀ) ଚୌର୍ଯ୍ୟ ବା ଚୋରି ।

ଡ଼କାଇବା, ଡ଼କେଇବା, } କ୍ରି. (ଦେଶଜ) ଆହ୍ୱାନ କରିବା; ଡ଼ାକିବା ନିମନ୍ତେ ଲୋକ ପଠାଇବା ।

ଡ଼କାଡ଼କି, ବି. (ଦେଶଜ) ପରସ୍ପର ଆହ୍ୱାନ । ଯଥା—

ଆସ ଆସ ଡ଼କାଡକରେ
ସେ ଡ଼କା ପକାଉଅଛନ୍ତି ପିକେ । କୋ. ବ୍ର. ସୃ.

ଡ଼ାକବୋବାଳି, ବି. (ଦେଶଜ) କାନ୍ଦବୋବାଳି ।

ଡ଼କାହକା, ବି. (ଦେଶଜ) ଅନ୍ୟୋନ୍ୟ ଆହ୍ୱାନ । ଯଥା—

ବଉଳ ! ଅଶୋକା ! ହୋଇ ଡକାହକା
ଚଳିଲେ ଅନେକ ନାରୀ । କ. ମା.

ଡ଼ଗଡ଼ଗ, କ୍ରି. ବିଂ. (ଦେଶଜ) ଶୀଘ୍ର ।

ଡ଼ଗଡ଼ଗା, ବିଂ. (ଦେଶଜ) ଅସ୍ଥିର; ଯେ ପେଟରେ କୌଣସି କଥା ରଖି ନ ପାରି ଶୀଘ୍ର ବାହାରେ ପ୍ରକାଶ କରିଦିଏ ।

ଡ଼ଗର, ବି. (ଦେଶଜ) ଦୂତ । ଯଥା—

ଆଜ୍ଞା ପ୍ରମାଣେ ଡ଼ଗର ଅଇଲା,
କଂସ ଆଜ୍ଞା ବୋଲି ଗୋପେ କହିଲା । ଗୋ. ଭ.

ଡ଼ଗରା, ବି. (ଦେଶଜ) ଯେଉଁ ବ୍ୟକ୍ତିଦ୍ୱାରା ଘୋଷଣା ପ୍ରଚରିତ ହୁଏ । ଯଥା—

କୁମ୍ଭାଟୁଆ ଖଗ ପ୍ରଖ୍ୟାତ ଡ଼ଗରା,
ରଙ୍ଗେ ବଜାଇଲା କାନନ ନାଗରା । ନ. କେ.

ଗ୍ରା: ଖଣ୍ଡାଏତମାନଙ୍କର ଶାଖାବିଶେଷ ।

ଡ଼ଗରାଇବା, କ୍ରି. (ଦେଶଜ) ଘୋଷଣା ପ୍ରଚରିତ କରିବା ।

ଡ଼ଗରାଇଜାଗିର, ଡ଼ଗରେଇଜାଗିର, } ବି. (ଦେଶଜ) ଡ଼ଗର କାର୍ଯ୍ୟ ନିମନ୍ତେ ରାଜସରକାରରୁ ମିଳିଥିବା ଜମି ।

ଡ଼ଙ୍କ, ବି. (ଦେଶଜ) ଲତାର ଅଗ୍ର; କୌଣସି ପଦାର୍ଥର ଅଗ୍ର ବା ମୁଣ୍ଡ । ଯଥା—ଡ଼ଙ୍କ ମୋଡ଼ିଦେବା ।

ଡ଼ଙ୍କା, ବି. (ଦେଶଜ) ଅଣକ; ବାଦ୍ୟବିଶେଷ; ଢେଣ୍ଡୁରା ।

ଡଙ୍କାରି, ବି. (ଦେଶଜ) କଣ୍ଟକବୃକ୍ଷବିଶେଷ ।

ଡ଼ଙ୍କି, ବି. (ଦେଶଜ) ତମ୍ବା ପିତଳନିର୍ମିତ ସାନ ହତା ।

ଡ଼ଙ୍କୁଣୀ, ବି. ସ୍ତ୍ରୀ. (ଡ଼ାକିନୀ ଶବ୍ଦଜ) ଡ଼ାଆଁଣୀ ।

ଡ଼ଙ୍ଗା, ବି. (ଦେଶଜ) ନୌକା । ଯଥା—

ଭଙ୍ଗା ଭୁଠ ଡଙ୍ଗାରେ ବସାଇ ତାକୁ ଆଇ,
କଳୁଷିନ ଅନ୍ତରେ ଶିଖିଲି ନାବ ବାହି । ନା. ରୁ. ଗୀ.

ବାବାଜ, ବି. (ଦେଶଜ) ବୈରାଗୀ, ସନ୍ନ୍ୟାସୀ- ବୈଷ୍ଣବ; ପିତା ମହାଶୟ; ବଡ଼ଲୋକ ମହାଶୟ ।

ବାବୁ, ବି. ( ଦେଶଜ ) ପିତା; ବାତ୍ସଲ୍ୟ- ସମ୍ବୋଧନ । ଯଥା—

ମୁନଙ୍କି କହୁଲେ ସବୁ,
ସେ ବୋଲନ୍ତ ରହ ବାବୁ । ବି. ରା.

ବଡ଼ଲୋକ । ଯଥା—

ସେଠାରେ ନ ଥିବେ କେହ୍ହ ଦେଶୀ ବାବୁ । ଦ. ବା.

(ଇଙ୍ଗଲଣ୍ଡୀୟଭାଷାରେ) ଅଳସବ୍ୟକ୍ତି; ସୁଖ- ଭୋଗୀ; ଧନଲୋକର ଉପାଧି ।

ବାଭ୍ର, ବି. (ଗଡ଼ଜାତରେ) ପୁଅ ।

ବାମଞ୍ଚ, ବଞ୍ଚ, ବି. (ଦେଶଜ) ସକଣ୍ଠାଖେଳର ଦାନବିଶେଷ । ଯଥା—

ଯୁଧିଷ୍ଠିରଙ୍କ ମୁଖ ଗୃହି ମନ୍ତ୍ରୀ କାଠି ପାଡ଼୍,
ଯୁଧିଷ୍ଠି ଦେଖିଲେ ଯେ ବାମଞ୍ଚ ଦାନ ପଡ଼ । ସା.ଭ୍ର.ସ.

ବାମୁଣ, } ବି. ( ବ୍ରାହ୍ମଣ ଶବ୍ଦଜ, ପ୍ରାକୃତ
ବାମଣ, } ବମ୍ହଣରୁ ଜାତ ) ବ୍ରାହ୍ମଣ । ଯଥା—

ଘାଟିଆ ବାମୁଣଗଣ ସଙ୍ଗେ ବକ ବକ । ଭ୍ର. ଭୁ.

ବାମୁଣୀ, ବାମୁଣିଆଣୀ, ବି. ସ୍ତ୍ରୀ. ( ଦେଶଜ ) ବ୍ରାହ୍ମଣ ସ୍ତ୍ରୀ ।

ବାମ୍ପି, ବାମ୍ପୀ, ବି. ସ୍ତ୍ରୀ. (ବାପୀ ଶବ୍ଦଜ) କ୍ଷୁଦ୍ର ପୋଖରୀ ।

ବାୟନା, ବି. (ପାରସ୍ୟ ଶବ୍ଦ) କ୍ରୟ କରିବା ପୂର୍ବରୁ ଦେବା ଅଗ୍ରିମ ମୂଲ୍ୟ; ବଅଣା ।

ବାୟା, ବାଇଆ, ବି. ( ଦେଶଜ ) ବାତୁଳ । (ବର୍ତ୍ତିକ ଶବ୍ଦଜ) ପକ୍ଷିବିଶେଷ ।

ବାୟାଣୀ, ବାଇଆଣୀ, ବି. ସ୍ତ୍ରୀ. ( ଦେଶଜ ) ବାତୁଳା; ମାଈ ବାୟାପକ୍ଷୀ ।

ବାୟୁନା, ବି. (ଦେଶଜ) ବାଦ୍ୟ ବଜାଇବା ଲୋକ । ଯଥା—

ବାୟୁନାଏ ଦୁନ୍ଦୁଭି ବଆଇ ହରଷେ । ବୈ. ବି.

ବାର, ବିଂ.(ବାରହ ପ୍ରାକୃତ ଶବ୍ଦଜ)୧୨ ସଂଖ୍ୟା; ଥର । କ୍ରି. ଜାଣ ।

ବାରକନା, ବି. ( ଦେଶଜ ) ଶସ୍ତ୍ରବିଶେଷ । (ନିକନା ଶବ୍ଦ ଦେଖ । )

ବାରଣ, ବି. (ଦେଶଜ) ବାରିବା; ଜାଣିବା, ବୋଧ, ଜ୍ଞାନ । ଯଥା—

ପର ଆପଣା ବୋଲି ଯେ ବାରଣ ନ ଯାଇ । ସା.ଭ୍ର.ବି.

ବାରଣି, ବାରଣୀ, ବି. ସ୍ତ୍ରୀ. (ବାରଣ ଶବ୍ଦଜ) ବାରଣୋପାୟ । ଯଥା—

କାମ ରଖିବନ କ ପ୍ରାଣେ ପୁଣି,
କ କରିବା ନାହିଁ ଆମ୍ଭ ବାରଣୀ । ର. ପ.

ବାରଦାଣ୍ଡି, ବି. ( ଦେଶଜ ) ଏକପ୍ରକାର ଶାରୀରିକ ଶ୍ରମଖେଳ ।

ବାରବୟ, ବିଂ. ( ଦେଶଜ ) ଦ୍ୱାଦଶବର୍ଷ ବୟସ୍କ ।

ବାରବୟା, ବିଂ. ( ଦେଶଜ ) ଦ୍ୱାଦଶବର୍ଷ ବୟସ୍କା । ଯଥା—

ବାର ବାର ଧରଇ ଉର ଉପରେ,
ବାରବୟା ଚାପ ଭଣା ଛତପରେ । ବି. ଚ. ମ.

ବାରବାନ, ବାରବାଣି, ବିଂ. (ଦେଶଜ) ଉଜ୍ଜଳ ବା ଉତ୍ତମ (ସୁନା) । ଯଥା—

ଝଲ ଗୌରବପୁ ଆଭାପୁଞ୍ଜ ବାରବାଣି
ସୁନା ଦର୍ପ ହରେ । ଯ. କେ.

ବାରବାର, କ୍ରି, ବିଂ. (ଦେଶଜ) ଥରକୁଥର । ( ବାରବୟା ଶବ୍ଦ ଦେଖ । )

ବାରମାଡ଼ି, ବିଂ. (ଦେଶଜ) ଉତ୍କୃଷ୍ଟ ବା ଉତ୍ତମ (ସୁନା) । ଯଥା—

ଭଲ ମନ୍ଦ ଦୁଇ କଥା ବିଗ୍ଭରଇ ଦେଖି,
ବାରମାଡ଼ି ସୁନା କି ପିତଳ ସଙ୍ଗେ ଲେଖି । ନା.ର.ଗୀ.

ବାରମାସି, } ବି.(ଦେଶଜ)ବର୍ଷଯାକ ।
ଆଠକାଲବାରମାସି, } ଯଥା—

ବିଷ୍ଣୁର ପୂଜାବିଧ କରନ୍ତ ବାରମାସି । ନୃ. ପୁ. ଚ. ତ.

ବାରସି, ବାରେସି, } ବି. (ଦେଶଜ) ବଡ଼ାଇ-
ବାରସି, ବାର୍ଷି, } ମାନଙ୍କର ଅସ୍ତ୍ରବିଶେଷ । ( କେନା ଶବ୍ଦ ଦେଖ । )

ବାରିଧି, ବାରିନିଧି, ବି. (ବାରିଂନିଧି ଶବ୍ଦର ଅପଭ୍ରଂଶ) ସମୁଦ୍ର । ଯଥା—

ଏ ଗ୍ରନ୍ଥ ମାଘମଦ୍ଧାଭଙ୍ଗ, ଅଶେଷ ବାରିନିଧି ସମ ।ମା.ମା.

କରୁଣାଙ୍କର କୃପାବାରିଧି ଭଗବାନ । ନୃ. ସୁ. ଚ. ଡ.

ବାରିକ, ବି. (ଦେଶଜ) ଭଣ୍ଡାରି ଜାତି । (ଗଞ୍ଜାମର ପାରଳା ପ୍ରଭୃତି ଅଞ୍ଚଳରେ) ନଗର ବା ଗ୍ରାମ ଦଣ୍ଡାସି ବା ଚଉକିଦାରଙ୍କୁ ମଧ୍ୟ ବାରିକ କହନ୍ତି ।

ବାରିବା, କ୍ରି. (ବାରଣ ଶବ୍ଦଜ) ନିବାରଣ କରିବା; (ଦେଶଜ) ଜାଣିବା । ଯଥା—

ନାଗ୍ର ବାର ବାର ନୋହିଲା ତର୍ହିଁ ଘଡ଼ିଏଯାଏ । ଲ.ବ.

ବାରିହା, ବାର୍‌ହା, ବାରିଆ, } ବି. (ବରାହ ଶବ୍ଦଜ) ବନ୍ୟ ଶୂକର ।

ବାରୁ, ବି. (ଦେଶଜ) ଘୋଟକ । ଯଥା—

ତକ୍ଷଣେ ବାରୁ ଲଗି ହୋଇ,
ବିଜୟ କଲେ ନୃପସାଇଁ । ଦା. ର.

ବାରୁଆଳ, ବି. (ଦେଶଜ) କଳହ ବା ବିରୋଧ । ଯଥା—

ଆସନ୍ତେଣ ଏକ ଘରେ ଶୁଭୁଅଛୁ କଳ,
ପଢ ପଢ଼ୀ ଦୁହିଙ୍କି ଲଗିଛୁ ବାରୁଆଳ । ନୃ. ସ୍ୱ. ସ. ତ.

ବିଂ. ବିରୋଧୀ । ଯଥା—

ସ୍ୱାମୀର ତୁଲେ ତୁମ୍ଭେ ନୋହିବ ବାରୁଆଳ । ସା.ଖ୍ର.ଆ.

ବାରୁଦ, ବି. (ଦେଶଜ) ସୋରା ଗନ୍ଧକ ମିଶ୍ରିତ ଚୂର୍ଣ୍ଣ ଅର୍ଥାତ୍ ଦାରୁ ।

ବାରୁଲଗି, ବି. (ଦେଶଜ) ଘୋଡ଼ାସବାର, ଘୋଡ଼ାରେ ବସିବା ।

ବାରୁଲଗିହେବା, କ୍ରି. (ଦେଶଜ) ଘୋଡ଼ାରେ ବସିବା । ଯଥା—

ପାଟଗଜ ଆଉ ପାଟବାରୁ ଲଗି ହୋଇ,
ଜଗଯାକ ବୁଲଣ ଦେଖିଲେ ନୃପସାଇଁ । ନୃ.ସ୍ୱ.ଷ.ତ.

ବାରେ, ବାରେକ, କ୍ରି. ବିଂ. (ଦେଶଜ) ଥରେ ।

ବାରୋଣୀ, ବି. (ବାରୁଣୀ ଶବ୍ଦଜ) ସ୍ନାନଯୋଗ ।

ବାରେଣ୍ଟ, ବି. (ଇଂରାଜୀ warrant ଶବ୍ଦର ଅପଭ୍ରଂଶ) ଅପରାଧୀକୁ ଧରି ନେବାପାଇଁ ହୁକୁମ । ଯଥା—

ଭଲବ ନୁହଇ ବାରେଣ୍ଟ ଯିବା ସେ । ଦ. ବା.

ବାର୍ଦ୍ଧଣ୍ଟୀର, ବି. (ବର୍ଦ୍ଧଣ୍ଟୀ = ବେଶ୍ୟା-ର-ଅପତ୍ୟାର୍ଥେ) ଅସତୀ ପୁତ୍ର, ଜାରଜ; ଆମ୍ର ପଲ୍ଲବ ।

ବାଲ, ବି. (ବଲ୍‌—ବୃଦ୍ଧି ପାଇବା-ଅ) ବାଳକ; ଲାଙ୍ଗୁଳ; କେଶ । ଜୀ. ସ୍ତ୍ରୀ. ନୂତନା ସ୍ତ୍ରୀ । ବିଂ. ନୂତନ; ଅଜ୍ଞାନ, ମୂର୍ଖ ।

ବାଳକ, ବି. (ବାଳ-କ ସ୍ୱାର୍ଥେ) ଶିଶୁପୁତ୍ର; ବାଳୟ, ବଳା; ମୁଦ, ଅଙ୍ଗୁରୀୟ; ଲାଙ୍ଗୁଳ ।

ବାଳଖିଲା, ବି. (ବାଳଖିଲ୍ୟ ଶବ୍ଦଜ) ଋଷି-ବିଶେଷ । ଯଥା—

ଆସନେ ବସିଲେ ବାଳଖିଲା ମହାମୁନି । ସା.ଖ୍ର.ଆ.

ବାଳଖିଲ୍ୟ, ବାଲଖିଲ୍ୟ, } ବି. ପୁଂ. ବୃଦ୍ଧାଙ୍ଗୁଷ୍ଠ ପରିମାଣ ମୁନିବିଶେଷ ।

ବାଳଚର୍ଯ୍ୟ, ବି. (ବାଳ-ଚର୍ଯ୍ୟ = ସ୍କନ୍ଦ) କାର୍ତ୍ତିକେୟ; ବାଳକର ଚରିତ ।

ବାଳଧି, ବି. (ବାଳ-ଧା-ଇ) ପୁଚ୍ଛ; ଗୁମର ।

ବାଳପାଶ୍ୟା, ବି. ସ୍ତ୍ରୀ. (ବାଳ-ପାଶ-ଯ-ଆ) ଲଲାଟଭୂଷଣ; ସୀମନ୍ତ ।

ବାଳପୁଷ୍ପୀ, ସ୍ତ୍ରୀ.(ବାଳ—କେଶ-ପୁଷ୍ପ—ଫୁଲ-ଈ) ଯୂଥିକା, ଯୂଈଗଛ ।

ବାଳମୂଷିକା, ବି. (ବାଳ = କ୍ଷୁଦ୍ର-ମୂଷିକା) ଚୁଟିଆମୂଷା ।

ବାଳବତ୍ସ, ବି. (ବାଳ = ସନ୍ତାନ-ବତ୍ସ = ପ୍ରିୟ) କପୋତ; ପାରା ।

ବାଳବ୍ୟଜନ, ବି. (ବାଳ-ବ୍ୟଜନ) ଗ୍ୱମର ।

ବାଳହସ୍ତ, ବି. (ବାଳ-ହସ୍ତ) କେଶଗୁଚ୍ଛ; ସଲୋମ ଲାଙ୍ଗୁଳ ।

ବାଲ୍ଲ, ବି. (ହ୍ୱନ୍ଦୀ) ବ୍ୟକ୍ତି । ଯଥା—

ସ୍ୱାମି ଗୁଣ ସହସ୍ର ବରଷ ଏହି ରୂଠେ,
ଜଣେ ପାର ହେବାବାଲ୍ଲ ପଡ଼େ ଏହା ଭେଟେ ।
ସା. ଖ୍ର. ଆ.

ବାଲି, } ବି. (ବାଳ-ଇ, ଇନ୍, ଏ ମାତାଙ୍କ
ବାଳୀ, } କେଶଗୁଚ୍ଛରୁ ଜନ୍ମିଥିଲେ) କଷ୍କିନ୍ଧ୍ୟା-
ପତି, ବାନରରାଜା । (ଦେଶଜ) ସ୍ତ୍ରୀ.
ସ୍ତ୍ରୀମାନେ କାନରେ ଲଗାଇବା ଏକପ୍ରକାର
ଗୁଣା; ଖେଳିବା ସାନ କଉଡ଼ି । ଯଥା—

ବାଲି ବଗଟ ଦ୍ୟୁତେ ସଦା ଜିତ । ବୈ. ବି.

ବାଲି, ବି. (ବାଲୁକା ଶବ୍ଦଜ) ବାଲୁକା ।

ବାଲିଆ, ବି. (ଦେଶଜ) ପକ୍ଷିବିଶେଷ । ଯଥା—

ସ୍ୱତକ କାଳୀ ନାଗୁଣୀ ଗୁଣ୍ଡୁରି ବାଲିଆ । ନୃ.ପୂ.ଚ.ଚ.

ବିଂ. ବାଲିମିଶ୍ରିତ । ଯେପରି—ବାଲିଆ
ମାଟି ।

ବାଲିଆ, ବି. (ଦେଶଜ)ମତ୍ସ୍ୟବିଶେଷ । ଯଥା--

ବାଲିଆମାଛରୁ ଅଲଏ କର,
ଆମ୍ବୁଲ ଛପଲ ତହିଁରେ ଭର । ହା. ତ.

ବାଲିକାଗଜ, ବି. (ଦେଶଜ) ଖଲିକାଗଜ ।

ବାଲିକୁଦ, ବି. (ବାଲୁକୂଟ ଶବ୍ଦଜ) ବାଲିଗଦା ।

ବାଲିଖଣ୍ଡି, ବି. (ଦେଶଜ) ପୁରୀର ସ୍ଥାନବିଶେଷ
ଅର୍ଥାତ୍ ଯେଉଁ ସ୍ଥାନରେ ଗୁଣ୍ଡିଚାମନ୍ଦିର
ବିଦ୍ୟମାନ । ଯଥା—

ବଳଗଣ୍ଡି ଉତ୍ତରରେ ବାଲିଖଣ୍ଡିପୁର । ନା.ର.ଗୀ.

ବାଲିଗରଡ଼ା, ବି. (ଦେଶଜ) ସାନ ସାନ
ଗୋଡ଼ି ପଥର ।

ବାଲିଗିରଡ଼ା, ବି. (ବାଲୁଗଣ୍ଡୂଷ ବା ଗଡ଼ଶ
ଶବ୍ଦଜ) ମତ୍ସ୍ୟବିଶେଷ ।

ବାଲିଙ୍ଗି, ବାନଗି, ବି. (ଦେଶଜ) ଗର୍ବ ।

ବାଲିଶ, ବିଂ. (ବଳିଂ ଷଷ୍ଠ୍ୟନ୍ତ ବଳିଶଃ,
ଶୋଚନ୍ନୂକରଣେ, ବଳିଶ ଏବ ବାଳିଶଃ,
ବଳି=ପୂଜୋପହାର-ଶୋ=ନାଶକରିବା-
ଅ=ବଳିଶ-ଅ ସ୍ୱାର୍ଥେ) ଅଜ୍ଞାନ; ଶିଶୁ;
ମୂର୍ଖ । (ଶିଶାବଜ୍ଞେ ଚ ବାଲିଶଃ—ଅମର ।)

ବାଲିଶ, ବି. (ଯାବନିକ) ଉପଧାନ, ତକିଆ ।

ବାଲିଶୁଆ, ବି. (ବାଲି=ବାଲୁକା-ଶୁକ=ଶୁଆ)
ଏକଜାତୀୟ ଶୁକପକ୍ଷୀ ।

ବାଲିହନ୍ତ, ବାଲିଅନ୍ତା, ବି. (ଦେଶଜ) ନଦୀ-
ବିଶେଷ; ପୁରୀଜିଲ୍ଲାର ସ୍ଥାନବିଶେଷ ।

ବାଲ୍ମିଶ, ବି. ମୂତ୍ରକୃଚ୍ଛ୍ର ରୋଗ ।

ବାଲୁଆରା ଜମି, ବି. (ଦେଶଜ) ଯେଉଁ ମାଟିରେ
ବାଲି କାଦୁଅଠାରୁ ୯ ଗୁଣ ଥାଏ ।

ବାଲୁଆରା ଦୋରସା ଜମି, ବି. (ଦେଶଜ)
ଯେଉଁ ମୃତ୍ତିକାରେ କାଦୁଅଠାରୁ ବାଲି
ଦ୍ୱିଗୁଣ ଥାଏ ।

ବାଲୁକା, ବି. ସ୍ତ୍ରୀ. ସଂ. ବାଲି ।

ବାଲୁଙ୍କା, ବି. (ବାଲୁକା ଶବ୍ଦଜ) ବାଲି ।
ଯଥା—

ବାଲୁଙ୍କା ମୂର୍ତ୍ତି କରି ପୂଜିବ ଶୁଭଚଣ୍ଡୀ । ନୃ.ପୂ.ଚ.ଚ.

ବାଲୁଙ୍ଗା, ବି. (ଦେଶଜ) ମୁନିଧାନ୍ୟ; ଧାନଗଛ
ଆକୃତି ତୃଣବିଶେଷ । ଯଥା—

କୃଷକେ ଉପାଡ଼ନ୍ତି ବାଲୁଙ୍ଗା ଖେତରୁଁ । ରୁ. ସୁ.

ବାଲୁତ, ବି. (ଦେଶଜ) ପିଲା, ବାସ୍ରଲ୍ଲୀପାହ ।
ଯଥା—

ଆଣିଲି ବାଲୁତ ତୋତେ ଏ ପ୍ରବାସେ । ନ କେ.

ବାଲୁତି, } ବି. ସ୍ତ୍ରୀ. (ଦେଶଜ) ମାଈ ପିଲା ।
ବାଲୁଣି, } ଯଥା—

ଜନଗହଳବେଳେ ବାଲୁଣି ଯାଇଥିଲା । ସା. ଭ୍ର. ଆ.

ବାଲୁବାଲୁଆ, ବି. (ଦେଶଜ) ଏକପ୍ରକାର
ପୋକ । (ଏ ପୋକ ଦେହରେ ଲାଗିଲେ
ଅସହ୍ୟ କଣ୍ଡୁ ହୁଏ) । ବିଂ. ଯାହାର
ଶରୀରରେ ବିଶେଷ ବାଳ ଥାଏ ।

ବାଲୁବାଲୁଆ, ବାଲୁବାଲୁଆ, ବି. (ଦେଶଜ)
ଶାକବିଶେଷ ।

ବାଳେୟ, ବି. (ବାଳ-ଏୟ) ଗର୍ଦ୍ଦଭ; ଦୈତ୍ୟ-
ବିଶେଷ । ବିଂ. ପୂଜାର ଉପଯୁକ୍ତ; ମୃଦୁ,
କୋମଳ; ବାଳକର ହିତକର ।

ବାଲ୍ୟ, ବି. (ବାଳ-ଯ) ଶୈଶବ; ୧୬ ବର୍ଷ
ପର୍ଯ୍ୟନ୍ତ ।

ବାବୁରି, ବାବୁଲି, ବି. (ଦେଶଜ) ଏକପ୍ରକାର
ତୃଣ; କୁଟିଳକର୍ତ୍ତିତ କେଶ; ଚୂର୍ଣ୍ଣକୁନ୍ତଳ ।
ଯଥା—

ସରସୀର ମୃଦୁବାତେ ମନ୍ଦେ ଦୋଳି ସ୍ୱେଦାର୍ଦ୍ର ଭାଲେ
ବାବୁରି,
କୁନ୍ତଳର ଲଗ୍ନଗୁଚ୍ଛ ଉଆଇଛି ଅଯତ୍ନଜାତ ମାଧୁରୀ ।
ଘ. କେ.

ବାସଙ୍ଗ, ବି. (ବାସକ ଶବ୍ଦଜ) ଔଷଧ ଗଛ-ବିଶେଷ । ( ଗୋଖର ଶବ୍ଦ ଦେଖ । )

ବାସନ, ବି. (ଦେଶଜ) ଶ୍ରେଷ୍ଠ ଶ୍ରେଷ୍ଠ ପାତ୍ର ।

ବାସନ୍ତ, ବିଂ. (ଦେଶଜ ପ୍ରାୟ) ମନୋମାତ ।
ଯଥା—

ବାସନ୍ତୀ ଆଳ ବାସନ୍ତ ଆଳ ପର ଗୁନ୍ଥିବ ତୋଳ,
ବାରେକ ବର ବାରେ କବରୀ ହେବ ପବନ ବାଳୀ ।
କୋ. ବ୍ର. ସୁ.

ବାସନ୍ଦ, ବି. (ଦେଶଜ) ଅଟକ, ମନା । ଯଥା—
ଅନେକ ଛଡ଼ଦାର ଗଲେ,
ମଠ ବାସନ୍ଦ କରାଇଲେ । ଦା. ର.

ବାସନ୍ଦବା, } କ୍ରି. ଅଟକ ବା ମନା କରିବା ।
ବାସେନ୍ଦବା, } ଯଥା—

ନମନ୍ତ୍ରା ଦୋଷ କଲେ ସେବାରୁ ଛଡ଼ାଇବ,
ପାତ୍ର ଦୋଷ କଲେଟି ଦ୍ୱାର ବାସେନ୍ଦବ । ନୃ.ପୃ.ପ୍ର.ତ.

ବାସିନ୍ଦା, ବିଂ. ( ଯାବନିକ ) ବାସକାରୀ, ଅଧିବାସୀ । ଯଥା—

ତାଳ ଆତପତ୍ର ମସ୍ତକେ ଧରଣ
ଗ୍ରାମର ବାସିନ୍ଦାଗଣ । ଉ. ସା.

ବାସିପାଇଟି, ବି. (ଦେଶଜ) ସ୍ତ୍ରୀମାନେ ପାହାନ୍ତରୁ ଉଠି କରିବା ଗୃହକାର୍ଯ୍ୟ । ଯଥା—
ରାତି ଥାଉଁ ଥାଉଁ ପଡ଼ନ୍ତି ଘରେ,
ବାସିପାଇଟି ତୁ ସାରନ୍ତି ଖରେ । ଉ. ସା.

ବାସିବା, କ୍ରି. (ବାସ୍ ଧାତୁଜ) ସୁଗନ୍ଧ ହେବା ।
ଯଥା—
ବାସିଲ ତୋ ତନୁ ତହୁଁ ବିଶେଷ । କ. ବ.
(ଦେଶଜ) ଦୁର୍ଗନ୍ଧ ହେବା ।

ବାସୀ, ବାସି, ବି. ( ଦେଶଜ ) ପର୍ଯ୍ୟୁଷିତ । ଯେପରି—ବାସି ଭାତ ।

ବାସୁଙ୍ଗା, ବି. (ଦେଶଜ) ପଟ । ଯେପରି—କଦଳି ବାସୁଙ୍ଗା ।

ବାସେଲୀ, ବି. ସ୍ତ୍ରୀ. (ଦେଶଜ) ଦେବୀବିଶେଷ । (ବାହୁଡ଼ୀ ଶବ୍ଦ ଦେଖ ।)

ବାସ୍ତୁ, ବି. ( ବାସ୍ତୁ ଶବ୍ଦଜ, ଅର୍ଥ ଅଳ୍ପ ଭିନ୍ନ ) ନିବାସ । ଯଥା—

—ବିଜୟା ନାମ ପାଟଣାରେ । ଅଟଇ ତାର ନିଜ ବାସ୍ତୁ,
କାଉରେ ଅଟେ ରଜପୁତ । ଦା. ର.

ବାସ୍ତୁରା, ବିଂ. (ଯାବନିକ) ଦେଓୟାଲୟା ବା ଫକୁଆ ।

ବାସ୍ତୋରି, ବାସ୍ତରି, } ବିଂ. ( ଦେଶଜ )
ବାଅସ୍ତରି, ବାଆସ୍ତରି, } ୭୨ ସଂଖ୍ୟା । ଯଥା—

ମହାଭାରତ ଯୁଦ୍ଧ ହୋଇ ସେ ଭୂମିର,
ଏମନ୍ତ ସମର ହେଲା ବାଆସ୍ତରିବାର । ସା. ଭା. ସ.
ଲୁଥ ଶ୍ରେଣୀ ଅଟେ ବାଆସ୍ତରି ସସ୍ତ ନାଡ଼ୀ,
ଠାବେ ଠାବେ ଭିଡ଼ା ହୋଇଅଛୁ ଗଣ୍ଠି ପଡ଼ି ।
ନୃ. ପୃ. ପ୍ର. ତ.

ବାଷଠି, ବାଷଠୀ, } ବିଂ. ( ଦ୍ୱାଷଷ୍ଟି ଶବ୍ଦଜ )
ବାଷଷ୍ଟୀ, } ୬୨ ସଂଖ୍ୟା ।

ବାଷ୍ପ, ବାସ୍ପ, (ବାଧ୍-ପ, ଧ୍ = ଷ) ଅଶ୍ରୁ; ଉଷ୍ମା; ସୂକ୍ଷ୍ମଜଳକଣା; କଣ୍ଟକାରି ।

ବାହ, ବାହା, ବି. ସ୍ତ୍ରୀ. (ବାହ୍-ଅ) ଭୁଜ ।

ବାହା, ବି. (ବିବାହ ଶବ୍ଦଜ) ବିବାହ । ଯଥା—
ବାହାଘର ଯେଉଁ ରସ,
ତାକୁ ଦେଖିଲେ ମାଡ଼ୁଛୁ ହସ । ହା. ତ.

ବାହକ, } ବି. ( ବାଦକ ଶବ୍ଦଜ ) ମୃଦଙ୍ଗ-
ବାହାକ, } ବାଦକ, ଯେ ମୃଦଙ୍ଗ ବଜାଏ ।

ବାହାଡ଼ା, ବି. (ବହେଡ଼ିକ ଶବ୍ଦଜ) ତ୍ରିଫଳାରୁ ଏକ ଫଳ ।

ବାହାଦୁର, ବି. (ଯାବନିକ) ସମ୍ଭ୍ରାନ୍ତ ଉପାଧି-ବିଶେଷ । ଯଥା—

ଆହେ ବୈକୁଣ୍ଠନାଥ ଦେ ରାଜା ବାହାଦୁର । ଉ. ଭ୍ର.
ଶ୍ରେଷ୍ଠ, ପ୍ରବୀଣ । ଯଥା—

ସତେ ସତେ ତୁମ୍ଭେ ଜଣେ ଅଟ ବାହାଦୁର । ଉ. ଭ୍ର.

ବାହାଦୁରୀ, ବି. ( ଯାବନିକ ) ପ୍ରବୀଣତା, ଶ୍ରେଷ୍ଠତା ।

ବାହାନ, ବି. (ବାହନ ଶବ୍ଦଜ) ଯାନ । ଯଥା—
ବୃଷଭ ବାହାନ ତୋହର । ମା. ମା.

ବାହାନା, ବି. (ଦେଶଜ) ଛଳନା । ଯଥା—
ସମସ୍ତ ଜାଣିବା ମିଛ ବାହାନରେ,
ଘଡ଼ି କାଟି କେହ୍ନ ଦେଖାଏ ବାହାରେ । ଦ. ବା.

ବାହାନ୍ନ, ବି. (ସମ୍ବଲପୁର ଅଞ୍ଚଳରେ) ମୁଚୁଳା ।

ବାହାପଟ, ବି. (ସଂସ୍କୃତ ଶବ୍ଦ, କିନ୍ତୁ ଭିନ୍ନାର୍ଥରେ ଓଡ଼ିଆରେ ପରିଣତ) ହସ୍ତ ସଙ୍କୋଚପୂର୍ବକ ବାହୁଦ୍ୱାରା କରିବା ଆଘାତ । ଯଥା—

କୀଚକ ବାହାପଟ ମାରନ୍ତେ ନେଇ ହୃଦେ,
ପଛକୁ ନ ଚଳିଲେ ଭୀମସେନ ପଦେ । କୃ.ଭା.ବ.ପ.

ବାହାପିଆ, ବି°. (ଦେଶଜ) ମିଥ୍ୟା ସାହସୀ । ଯଥା—
କହେ କେତେ ରଙ୍ଗେ କଥା ବାହାପିଆପଣେ । ମ.ଯା.
ବାହାବା, ବି. (ଯାବନିକ) ଧନ୍ୟବାଦ । ଯଥା—
ବାହାବା ନେବାକୁ ହେଉଥିଲେ ବଡ଼ ଖୁସି । ଡ. ବ.
ବାହାର, ବି°. (ବହିର୍ ଶବ୍ଦଜ) ନିର୍ଗତ । (ଯାବନିକ) ସୁନ୍ଦର । ଯଥା—
ବଲ୍ମୀକ ଶିଖାଗରୁ ହୋଇ ବାହାର,
ସୁରେନ୍ଦ୍ର ଚାପ ଯେମନ୍ତେ ଦିଶେ ବାହାର । ମେ.ଦୂ.
ବି. (ଯାବନିକ) ସୌନ୍ଦର୍ଯ୍ୟ, ସୌଷ୍ଠବ । (ବହିର୍ ଶବ୍ଦଜ) ଗୃହର ବାହ୍ୟପ୍ରଦେଶ । ଅ°. (ପ୍ରାକୃତ ବାହିର ଶବ୍ଦଜ) ବ୍ୟତୀତ । ଯଥା—
ଆନ କିଛି ନ ଆସେ ତହିଁ ବାହାରେ । ବି. ଚ. ମ.
ବାହାରି, ବି°. (ପ୍ରାକୃତ ବାହିର ଶବ୍ଦଜ) ଭିନ୍ନ, ଅନ୍ୟ । ଯଥା—
କେ ବୋଇଲେ ପୁରୁଷ କେ ବୋଇଲେ ସ୍ତ୍ରିରି,
କେ ବୋଇଲେ ଦୁଇ କଥାରୁ ବାହାରି । କୃ.ଭ.ବ.ପ.
ବାହାରିବା, କ୍ରି. (ଦେଶଜ) ଜାତ ହେବାର, ବହିର୍ଗତ ହେବାର । ( ବାହାର ଶବ୍ଦ ଦେଖ । )
ବାହାଲ, } ବି. (ପାରସ୍ୟ) ପଦଚ୍ୟୁତକୁ ଫେର
ବାହାଲି, } କାର୍ଯ୍ୟରେ ନିଯୁକ୍ତକରଣାର୍ଥ ଆଦେଶ ।
ବାହାଳ, ବି. (ଦେଶଜ) ଭଲ କଉଡ଼ି; ଡିନଟା ଗୁରିଟା କଉଡ଼ିରେ ଖେଳିବା ଖେଳ ।
ବାହି, ବି. ( ଦେଶଜ ) ଶଙ୍ଖା ବା କାଚର ମୁଠା । ଯଥା—
ଶଙ୍ଖା ଦୁଇ ବାହି ଦୁଇ ହାତେ ଲଇ । କୃ. ଭ. ବ. ପ.
ବଳୟ ପ୍ରଭୃତି ହସ୍ତଭୂଷଣ । ଯଥା—
କଣକରଜତ ଯେଉଁ ବାହୁ ଦୁଇ,
ତହିଁରେ ବହିଛନ୍ତି ସେ ଶଙ୍ଖା ବି ବାହି । କୃ.ଭ ବ.ପ.
ବାହିବା, କ୍ରି. (ଦେଶଜ) ବଜାଇବା । ଯଥା—
ହାଟ ଦେଖାଉଅଛନ୍ତି ନଟ ତହିଁ,
ଚଢ଼ି ବଂଶଶଳାକାରେ ଢୋଲ ବାହି । ଲ. ବ.
ରଥାଦି ଚଳାଇବା । ଯଥା—
କୃଷ୍ଣ କହନ୍ତି କୋପଭରେ,
ଦାରୁକ ବାହା ଧାଡକାରେ । ଭ. ଦ. ସ୍ତ.
ଆକ୍ରମଣ କରିବା । ଯଥା—
ମୋ ରାଜ୍ୟକୁ ବାହିଲ କରିତ ମହୀପାଳ । ସା. ଭ. ସ.
ସେନାଦି ସହ ପ୍ରୟାଣ କରିବା । ଯଥା—
ଆଜ୍ଞା ପରମାଣେ ବଙ୍ଗଦେଶ ସେନାପତି,
ସମଦଣ୍ଡ ଘେନି ରାଜା ବାହାଇ ଚଳନ୍ତି । ସା. ଭ. ସ.
ଜଳାଦି ପ୍ରସରଣ କରାଇବା ।
ବାହିର୍ଯ୍ୟ, } ବି°. (ଦେଶଜ) ବାହ୍ୟ; ଇତର ।
ବାହିରିଜ, } ଯଥା—
ବାହିର୍ଯ୍ୟ ଲୋକ ସାହାଯ୍ୟ କେତେବେଳ ଦିଅି ।
କୋ. ବ୍ର. ସୁ.
ବାହୁ, ବି. (ବାଧ୍-ଉ, ଧ = ହ) ଭୁଜ, କକ୍ଷଠାରୁ ଅଙ୍ଗୁଳିର ଅଗ୍ରଭାଗ ପର୍ଯ୍ୟନ୍ତ ଅବୟବ; ତ୍ରିକୋଣାଦିର ପାର୍ଶ୍ୱରେଖା ।
ବାହୁକ, ବି. (ବାହୁ-କ) ସାରଥି-ବେଶଧାରୀ ନଳରାଜା; କପି । ବି°. ଦାସ, ଅଧୀନ । (ବାହକ ଶବ୍ଦଜ) ଯେ ବାହିନିଏ । ଯଥା—
ହରି ନାମ ନଉକା ବାହୁକ ଭକ୍ତ ହୋଇ । ନୃ.ପୁ.ଦ୍ୱି.ଚ.
ବାହୁଙ୍ଗା, ବାହୁଙ୍ଗୀ, } ବି.ସ୍ତ୍ରୀ. (ଦେଶଜ) ତାଳ,
ବାଙ୍ଗୁଆ, } ନଡ଼ିଆ ଓ କଦଳୀ ବୃକ୍ଷାଦିର ଶାଖା ।
ବାହୁଙ୍ଗା, ବାହୁଙ୍ଗୀ, ବି. ସ୍ତ୍ରୀ. ( ଦେଶଜ ) ଭାରଦଣ୍ଡ ।
ବାହୁଜ, ବି. ( ବାହୁ-ଜନ୍-ଅ ) କ୍ଷତ୍ରିୟ; ଶୁକପକ୍ଷୀ । ବି°. ବାହୁଜାତ ।
ବାହୁଟା, ବି. (ଦେଶଜ, ତେଲଙ୍ଗାମାନେ ମଧ କହନ୍ତି) ଧ୍ୱଜ, ବାନା । ( ବାତପ୍ରମୀ ଶବ୍ଦଜ ) ବେଗଗାମୀ ହରିଣ ।
ବାହୁଟିଆ, } ବି. (ବାତପ୍ରମୀ ଶବ୍ଦଜ) ହରିଣ-
ବାଉଟିଆ, } ବିଶେଷ । ଯଥା—
ବାହୁଟିଆ କୃଷ୍ଣାଜିନ ଗୁଳମାନ ଥିବ । ସା· ଭ· ଆ·
ବାହୁଟୀ, ବି. ସ୍ତ୍ରୀ. ( ଦେଶଜ ) ହସ୍ତାଭରଣ ବିଶେଷ । ଯଥା—
କରେ ବଳୟ ବାହୁଟୀ କଙ୍କଣ । ଗୋ· ଭ·
ବାହୁଡ଼, ବାହୁଡ଼ା, ବି· (ଦେଶଜ) ପ୍ରତ୍ୟାବର୍ତ୍ତନ, ଫେରିବା; ଜଗନ୍ନାଥଙ୍କ ଯାତ୍ରାବିଶେଷ ।

ବାହୁଡ଼ାଣି, ବି. (ଦେଶଜ) ପ୍ରତ୍ୟାବର୍ତ୍ତନ ।

ବାହୁଡ଼ାଦଶମୀ, ବି. ସ୍ତ୍ରୀ. (ଦେଶଜ) ଆଷାଢ଼ ଶୁକ୍ଳଦଶମୀ ।

ବାହୁଡ଼, ବାଉଡ଼, ଅ°. (ଦେଶଜ) ପୁନରପି, ଆଉ ଥରେ ।

ବାହୁଡ଼ିବା, କ୍ରି. (ଦେଶଜ) ଫେରି ଆସିବା ।

ବାହୁଡ଼ୀ, ବି. ସ୍ତ୍ରୀ. (ଦେଶଜ) ଦେବୀଙ୍କ ନାମ-ବିଶେଷ । ଯଥା—

ବରୁଣାଈ ଚାଇଭଦ୍ରା ବାହୁଡ଼ୀ ଚାଟେଲୀ,
ବାରଜା ବ୍ରହ୍ମାୟଣୀ ବିକଟ ବିକରାଳୀ । ନୃ.ପୁ.ପ.ତ.

ବାହୁଣ୍ଡି, ବି. ସ୍ତ୍ରୀ. ( ବାହୁମଣ୍ଡି ପଦଜାତ ) ଦେବୀବିଶେଷ । (ଚେନ୍ତାଳୀ ଶବ୍ଦ ଦେଖ ।)

ବାହୁତ୍ରାଣ, ବି. (ବାହୁ-ତ୍ରୈ-ଅନ) ଅସ୍ତ୍ରାଘାତ ନିବାରଣ ନିମିତ୍ତ ବାହୁରେ ବନ୍ଧ ଲୌହମୟ ଆବରଣ ।

ବାହୁଦନ୍ତୀ, ବି. (ବାହୁ-ଦନ୍ତ-ଇନ୍) ଇନ୍ଦ୍ର ।

ବାହୁନା, ବାଉନା, } କ୍ରି. (ଦେଶଜ) ପ୍ରିୟ ପଦାର୍ଥ ସ୍ମରି ଶୋକ କରିବା; ଦୋଷାରୋପଣ କରିବା ।

ବାହୁନିବା, ବାଉନିବା, } କ୍ରି. (ଦେଶଜ) ଶୋକ କରି ଝୁରିବା । ଯଥା—

କେହି ନ ଶୁଣିଲେ ବାହୁନ ବାହୁନ
କଲ ମୁ ଯେତେ ବିଳାପ । ପାବଣ୍ଡି ।

ଦୋଷାରୋପଣ କରିବା ।

ବାହ୍ମଣ, ବାମୁଣ, ବି. (ବ୍ରାହ୍ମଣ ଶବ୍ଦଜ, ପ୍ରାକୃତ ବହ୍ମଣ ଶବ୍ଦଜ) ବିପ୍ର, ଦ୍ୱିଜ ।

ବାହ୍ମଣଝାଟୀ, ବି. ସ୍ତ୍ରୀ. (ବ୍ରାହ୍ମଣଯଷ୍ଟିକା ଶବ୍ଦଜ) ହ୍ରସ୍ୱ ବୃକ୍ଷବିଶେଷ ।

ବାହ୍ମଣିଆଣୀ, ବାମୁଣିଆଣୀ, ବି. ସ୍ତ୍ରୀ. (ଦେଶଜ) ବ୍ରାହ୍ମଣ ସ୍ତ୍ରୀ ।

ବାହୁଯୁଦ୍ଧ, ବି. (ବାହୁ-ଯୁଦ୍ଧ) ମଲ୍ଲଯୁଦ୍ଧ ।

ବାହୁଳ, ବି. (ବହୁଳା = କୃତ୍ତିକା ନକ୍ଷତ୍ରଯୁକ୍ତା ପୂର୍ଣ୍ଣିମା-ଅ) କାର୍ତ୍ତିକ ମାସ । (ବହୁଳ = ଅଗ୍ନି-ଅ ସ୍ୱାର୍ଥେ) ଅଗ୍ନି । (ବାହୁ-ଲା-ଅ) ବାହୁତ୍ରାଣ । ( ବହୁଳ = ଅନେକ-ଅ ) ଅନେକତ୍ୱ ।

ବାହୁଲ୍ୟ, ବି. (ବହୁଳ-ଯ) ଆଧିକ୍ୟ, ପ୍ରାଚୁର୍ଯ୍ୟ ।

ବାହୁବାହବି, ବି. (ବାହୁ-ଦ୍ୱିତ୍ୱ-ଇ) ବାହୁଯୁଦ୍ଧ ।

ବି. ଅ°. (ଅପି ଶବ୍ଦଜ, ପ୍ରାକୃତ) 'ମଧ୍ୟ' ଏହି ଅବ୍ୟୟର ଅର୍ଥ ।

ବିଆଁ, ବି. (ଦେଶଜ) ଗୋରୁ ଆଦିର ପ୍ରସବ ।

ବିଆଜ, ବେଆଜ, ବ୍ୟାଜ, } ବି. (ମରହଟ୍ଟୀ, ବ୍ୟାଜ ଶବ୍ଦଜ) ସୁଦ । ଯଥା—

ବ୍ୟାଜ ଯେ ବା ମାଗି ବ କରଇ ଦରପୁର,
ସୁବେଘ ବିପ୍ରଙ୍କର ହରଇ ବସୁନ୍ଧର । ନୃ.ପୁ.ପ୍ର.ତ.

ବିଆଣ, ବି. (ଦେଶଜ) ପ୍ରସବ । ଯଥା—

ପୋଡ଼ ଏ ଦେବକୀ ବିଆଣ,
କେ ବୋଲେ କର୍ଣ୍ଣେ ତା ନ ଶୁଣ । ଭା.ଦ.ସ୍କ.

ବିଆଣିଆ, ବି°. ସ୍ତ୍ରୀ. (ଦେଶଜ) ପ୍ରସବବତୀ ।

ବିଆଳି, ବିଆଳୀ, ବି. ସ୍ତ୍ରୀ. (ଦେଶଜ) ଧାନ୍ୟ-ବିଶେଷ ।

ବିଇଞ୍ଚ, ବି. (ବିଚର୍ଚ୍ଚିକା ଶବ୍ଦଜ) ଏକପ୍ରକାର କଣ୍ଡୁରୋଗ ।

ବିଏଁ, ବି. (ଦେଶଜ) ବେକ ପର୍ଯ୍ୟନ୍ତ ପରିମାଣ ।

ବିକନ୍ଧ, ବି. (ଦେଶଜ) ଦୁଇ ଘରର ମଧ୍ୟବର୍ତ୍ତୀ ସଙ୍କୀର୍ଣ୍ଣ ସ୍ଥାନ । ଯଥା—

ଏମନ୍ତରୂପେ ଗ୍ରାମେ ଫେରି,
କନ୍ଧ ବିକନ୍ଧ ଆଦି କରି । ଦା. ର.

ବିକଳ, ବିକଳା, ବି. (ଦେଶଜ) ଦୈନ୍ୟ, କାତରତା । ବି°. କାତର ।

ବିକଳାଇବା, କ୍ରି. (ଦେଶଜ) କାତର ବା ଦୈନ୍ୟ ହେବା । ଯଥା—

ରାମ ମୁଖକୁ ଚାହିଁ କହଇ ବିକଳାଇ
ଶୁଣ ଧାର୍ମିକ ରଘୁବଂଶୀ । ବି. ରା.

ବିକସିବା, କ୍ରି. (ବି-କାଶ ଧାତୁଜ) ପ୍ରସ୍ଫୁଟିତ ହେବା, ପ୍ରକାଶିତ ହେବା ।

ବିକା, ବି. (ବି-କ୍ରୀ ଧାତୁଜ, ପ୍ରାକୃତ ବିକ୍କଅରୁ ଜାତ) ବିକ୍ରୟ । ଯଥା—

ବିକା କଣା ଲାଗିଅଛି ନାନା ଛନ୍ଦେ । ନ. କେ.

(ପୂର୍ବ ଶବ୍ଦ ସମ୍ଭୂତ) ବକବା ଲୋକ । ଯଥା—

ମିଳିଲେ କୋଳବକା ଲଗେ,
ମାଣ ପାଞ୍ଚ ଦେଖାଏ ବେଗେ । ଛା. ଦ. ସ୍କ.

ବି°. ବଞ୍ଚିତ । ଯଥା—

ବକା ମୋର ମନ ପ୍ରାଣ ଜାନକୀ ପାଶରେ । ବୈ. ବ.

**ବକାଇବା**, କ୍ରି. (ଦେଶଜ) ଭଲରେ ଗଣିତ ହେବା କିମ୍ବା କାର୍ଯ୍ୟଦକ୍ଷ ବୋଲାଇବା । ଯଥା—

ବଡ଼କା ଦେଶେ ଥିବାକୁ ସିନା ବକାଉଛ,
ବ୍ରାହ୍ମଣ ଲୋଗୁଏ ଆଣି ଯୁଦ୍ଧେ ପୂରାଉଛ । ନୃ.ପୁ.ଚ.ଚ.

(ପ୍ରାକୃତ ବକ୍କ ଧାତୁଜ) ବନ୍ଧସ୍ପୃ କରାଇବା ।

**ବକାବକ**, ବି. (ବକା ଶବ୍ଦଜାତ ହେଲା ପର) ବନ୍ଧସ୍ପୃ । ଯଥା—

ବଜାର ବସି ଦ୍ରବ୍ୟ ହେଉଛୁ ବକାବକ । ନୃ. ପୁ.

**ବକାଯିବା**, କ୍ରି. (ଦେଶଜ) ଭଲରେ ଗଣିତ ହେବା କିମ୍ବା କାର୍ଯ୍ୟଦକ୍ଷ ବୋଲାଇବା; ବଞ୍ଚିତ ହେବା ।

**ବକବା**, କ୍ରି. (ପ୍ରାକୃତ ବକ୍କ ଧାତୁଜ) ବନ୍ଧସ୍ପୃ କରିବା । ଯଥା—

ପୂର୍ବ ପୁରୁଷର ପ୍ରତିଷ୍ଠା ବିଶାଳ,
ବକ ଖର୍ଗି ଖାଉଥିବ କେତେ କାଳ । ଦ. ବା.

**ବକହେବା**, କ୍ରି. ଆପେ ଆପଣାକୁ ବକବା । (ଓହଲା ଶବ୍ଦ ଦେଖ ।)

**ବକୋଡିବା**, କ୍ରି. (ବି-କୁଟ୍ ଧାତୁଜ) କାର-ଡିବା । ଯଥା—

ବକୋଡ଼ କାଟିଲେ ଶରୀର,
ବୋଲିଲେ ଲବଣ ବେଶର । ମା. ମା.

କାମୋଡ଼ିବା କିମ୍ବା ଚିଣ୍ଡାଇବା । ଯଥା—

ବକୋଡ ନାସା ତୁଣ୍ଡେ ଶ୍ରୁତ ଚୁନ୍ନାଇ ପଣ୍ଡେ
ଅନ୍ତରୀକ୍ଷରେ ଉଡ଼ିଯିଛେ । ବୈ. ବ.

**ବନ୍ଧ, ବନ୍ଧେ**, ବି. (ବନ୍ଧସ୍ପୃ ଶବ୍ଦର ଅପଭ୍ରଂଶ) ବନ୍ଧସ୍ପୃ । ଯଥା—

ପାଟକେ ହାଟରେ ବନ୍ଧୁ ବନ୍ଧେ କରନ୍ତୁ । ଲ. ବ.

**ବନ୍ଦୀ, ବନ୍ଦି, ବଂକର**, ବି. (ବନ୍ଦେତା ଶବ୍ଦଜ) ବକବା ଲୋକ । ଯଥା—

କାଞ୍ଚୀ ନଗରେ ବୁଲ୍‌ବୁଲ୍,
ଡାକନ୍ତୁ ଆସ୍ତା ବନ୍ଦୀ ବୋଲ୍ । ଦା. ର.

(ବନ୍ଧସ୍ପୃ ଶବ୍ଦଜ) ବନ୍ଧସ୍ପୃ । ଯଥା—

ଜାଲ ପକାଇ ମୀନ ମାର,
ପ୍ରାଣ ପୋଷଇ ବନ୍ଦୀକର । ଦା. ର.

(ଡ଼ିକରି ଶବ୍ଦ ଦେଖ ।)

**ବଖଣ୍ଡ**, ବି. (ଦେଶଜ) କୁବଚନ । ଯଥା—

ଚଣ୍ଡ ହୋଇ ଦେଖ ବଖଣ୍ଡ କହୁଛୁ
ମଧୁର ନାହିଁ ତୁଣ୍ଡରେ । ବ. ଶ. ମ.

**ବଗଡ଼ା**, ବି°. (ଦେଶଜ) ଦୁଷ୍ଟ ବା ଭ୍ରଷ୍ଟ ।

**ବଗଡ଼ିବା, ବଗଡ଼ିହେବା**, କ୍ରି. (ଦେଶଜ) ବିରୋଧ ହେବା । (ଦରୋବସ୍ତ ଶବ୍ଦ ଦେଖ) ଅସମ୍ମତ ହେବା ।

**ବଗାଡ଼, ବଗାଡ଼ିଆ**, ବି. (ଗଡ଼ଜାତ ଶବ୍ଦଜ) ମୂଲ ନେଇ ସବାରି ପ୍ରଭୃତି ବହିବା ବେଠିଆ ।

**ବଗାଡ଼ିବା**, କ୍ରି. (ଗଡ଼ଜାତ) ବେଠିଆ ଠିକଣା କରିବା । (ଦେଶଜ) କାର୍ଯ୍ୟ ବିରୋଧ କରିବା ।

**ବଟିଡ଼ିବା, ବଗିଡ଼ିଯିବା**, କ୍ରି. (ଦେଶଜ) ବିକାରଯୁକ୍ତ ହେବା ।

**ବଚଣା, ବଞ୍ଚଣା, ବଚଣି, ବଞ୍ଚଣି, ବଞ୍ଚଣୀ**, ବି. ସ୍ତ୍ରୀ. (ବ୍ୟଜନ ଶବ୍ଦଜ) ବ୍ୟଜନ, ପଙ୍ଖା । ଯଥା—

ବଚଣା ପବନେ　　　　କେନ୍ଦୁ ବା ଚନ୍ଦନେ
ଶୀତଳନ୍ତୁ ସୁଶରୀର । ତ୍ରୁ. ମା.

ପବନ ବଚଣି ଧରି ବଞ୍ଚେ ମୋତେ ନଚେ୍ୟ ।
ନୃ. ପୁ. ଚ. ଚ.

ବଞ୍ଚଣୀ ପାଦ ମଞ୍ଜୀଳ ଗୁଳ । ପ୍ରେ. ସୁ. ନ.

ବଞ୍ଚିବା, ବ୍ୟଜନ ଚାଳନ କରିବା ।

**ବଚରାବଚରହେବା**, କ୍ରି. (ବଚୁର ଶବ୍ଦଜ) ଅନ୍ୟୋନ୍ୟ ବଚୁର କରିବା ।

**ବଚୁ**, ବି. (ଦେଶଜ) ଦୂଷଣ ।

**ବଚୁରା**, ବି°. (ଦେଶଜ) ଅନାଥ, ଦୀନ ।

**ବଚକଟିଆ**, ବି°. (ଦେଶଜ) ବିକୃତ । ଯଥା—

ବଡ଼ ବଚକଟିଆ ସେ କଣ୍ଟାଖୁଣ୍ଟା ଭୂମି । ସା. ଭ୍ର. ଆ.

**ବଚଟିହେବା**, କ୍ରି. (ଦେଶଜ) ବିକୃତ ହେବା । ଯଥା—

ଆମର ଦେହରେ ଆମର ପରୋପଦେଶେ ପାଣ୍ଡିତ୍ୟ-ଗୁଡ଼ାକ ବଚଟି ହୋଇଯାଇ ଦାଦହଟାଯାକ ହୁମାଲ କରି ପକାଇଲଣି । ଉ.ସା.୧୮.୧୧.

ବଚ୍ଛଣା, ବଚ୍ଛଣି, ବି. ( ବିସ୍ତରଣ ଶବ୍ଦଜ ) ଆସ୍ତରଣ । ଯଥା—

ନବେ ତାର ପ୍ରାନ୍ତେ ବାମାଦଳ ଗଲେ
ବଚ୍ଛଣି ହୋଇ କାନନେ । ଯ. କେ.

ବିସ୍ତୃତ ଆସନ; ଶେଯ ।

ବଚ୍ଛ, ବି. (ବୈଦିକ ଶବ୍ଦଜ, ପ୍ରାକୃତ ବଚ୍ଛାଅ ଶବ୍ଦ ଜାତ) ବର୍ଷାର ଖାଟବିଶେଷ; ମାସ-ବିଶେଷ । ଯଥା—

ବଚ୍ଛ କୃଷ୍ଣପକ୍ଷ ଚତୁର୍ଥୀ ଯେ ଭୃଗୁବାର,
ଶ୍ରବଣା ନକ୍ଷତ୍ର ଯେ ଅଟଇ ସେ ଦିନର । ସା.ଭ୍ର.ଆ.

ବଚ୍ଛାଇବା, କ୍ରି. (ଦେଶଜ) ଶଯ୍ୟାଦି ବିସ୍ତୃତ କରି ପକାଇବା । ଯଥା—

ଏକ ଗୋଟି ମଞ୍ଚ କାଢିଆଣିଲା,
ମନ୍ଦିର କୋଠାରେ ତା ବଚ୍ଛାଇଦେଲା । ହା. ଡ.

ବଚ୍ଛାଣିକରିଦେବା, କ୍ରି. ବିଭକ୍ତ କରିଦେବା; ବାଣ୍ଟି କରି ଦେବା ।

ବଚ୍ଛୁଆତି, } ବି. (ବୃଶ୍ଚିପର୍ଣୀ ଶବ୍ଦଜ) କଣ୍ଡୁ-
ବଚ୍ଛ୍ୱାତି, } କାରକ ଲତାବିଶେଷ । ସଂ. ଦୁଷ୍ଟ । ଯଥା—

କସ କଦମ୍ବ ଭୃମ୍ବ ପୋଏ ତ ବଚ୍ଛୁଆତ,
ଦାଣ୍ଡର ଖପର ଆଣି ଘରେ ଥୋଇଯାନ୍ତି । ନୃ. ପୃ.

ବିଜୟ, ବି. (ଦେଶଜ) ଦେବତା ଓ ରାଜାଙ୍କର ପ୍ରସ୍ଥାନ ବା ଗମନ । ଯଥା—

ପୂର୍ବଜରେ ପୂର୍ବଗଜ ଶ୍ରବ ଉପୁଜାଇ,
ପଦଶ୍ରେ ବିଜୟ କଲେ ଟଳୁଲଇ ଟଳୁଲଇ । କୋ. ବ୍ର. ସ୍ତ.

ବଜଘୋଷ, ବି. ( ବିଜୟଘୋଷ ଶବ୍ଦଜ ) ବାଦ୍ୟବିଶେଷ । ଯଥା—

କର୍ଣ୍ଣାଳ କାହାଳ ବଜଘୋଷ ବେଣୁ ଡମ୍ଫା । ଲା.ବ.

ବିଜୁ, ବିଜୁଳି, ବିଜୁଳୀ, ବି. ସ୍ତ୍ରୀ. (ବିଦ୍ୟୁତ୍ ଶବ୍ଦଜ, ପ୍ରାକୃତ ବିଜ୍ଜୁ ଓ ବିଜ୍ଜୁଲି ଶବ୍ଦ ଜାତ, ପ୍ରାକୃତରେ ବିଜୁଳିଆ ମଧ୍ୟ ହୁଏ) ଚପଳା । ଯଥା—

ସାତ୍ତ୍ୱିକ ସୈନ୍ୟମେଘେ ସେ ଅସ୍ତ୍ରପନ୍ତି ବିଜୁ,
ପରସ୍ତେ ନୟନକୁ ଦଶୁଛନ୍ତି ମଞ୍ଜୁ । କୃ.ଭା.ଡ ପ.

ବିଜୁଳିପୋକ, ବି. ( ବାଲେଶ୍ୱର ପ୍ରାନ୍ତରେ କହନ୍ତି ) ଜୁଳୁଜୁଳିଆ ପୋକ ।

ବଜେ, ବି. (ଦେଶଜ) ଗମନ; ଆଗମନ । ଯଥା—

ଯାଅ ହେ ହନୁ ଭରତ ପାଶେ ଆମ୍ଭର ବଜେ କହ ।
ବି. ରା.

ପ୍ରବେଶ । ଯଥା—

ଏ ବଟୁର ମୂଳ କର,
ବଜେ ବହନେ ସୁନ୍ଦରୀ । ଲା. ବ.

ବଜେକର୍ଣ୍ଣିକଟାରି, ବି. ( ଦେଶଜ ) ଅସ୍ତ୍ର-ବିଶେଷ । ଯଥା—

ରାଣୀ ମୁଖରୁ ଭାଷା ଯେ ନ ସ୍ଫୁରଇ ପୁଣି,
ବଜେକର୍ଣ୍ଣିକଟାରରେ ପକାଇଲେ ହାଣି । ସା.ଭ୍ର.ଆ.

ବଟ୍ଟା, ବି. ସ୍ତ୍ରୀ. (ଦେଶଜ) ଦେବୀଙ୍କ ନାମ-ବିଶେଷ । ଯଥା —

ବୈଷ୍ଣବୀ ବିଷ୍ଣୁ ହୃଦସ୍ଥା କମଳା ବରେଣ୍ୟା,
ବ୍ରହ୍ମାସ୍ୱଣୀ ବାକ୍ୟେଶ୍ୱରୀ ବିନତା ଯେ ବଟ୍ଟା ।
ନୃ. ପୃ. ପ. ଡ.

ବଞ୍ଚା, ବି. (ବାଜ୍ ଧାତୁଜ) ବ୍ୟଜନ ଚାଳନ କରିବା ।

ବଞ୍ଚାବଞ୍ଚି, ବି. (ବାଜ୍ ଧାତୁଜ) ବ୍ୟଜନ ଚାଳନ କରିବା । ଯଥା—

ବୋଲନ୍ତି ଏ ଆଲଟେ ହେଉଥା ବଞ୍ଚାବଞ୍ଚି । ନୃ.ପୃ.

ଅନ୍ୟୋନ୍ୟ ବଞ୍ଚିବା ।

ବଞ୍ଚିବା, କ୍ରି. (ବାଜ୍ ଧାତୁଜ) ବ୍ୟଜନ ଚାଳନ କରିବା । ଯଥା—

ବ୍ୟସ୍ତେ ଅନୁଚରେ ବ୍ୟଜନେ ବଞ୍ଚିଲେ ସିଞ୍ଚିଲେ ଜଳ ।
ଉଷା ।

ବଞ୍ଛା, ବି. (ଦେଶଜ) ଏଣେ ତେଣେ ଫିଙ୍ଗିବା ।

ବଞ୍ଛିବା, କ୍ରି. ( ଦେଶଜ ) ଏଣେ ତେଣେ ଫିଙ୍ଗିବା । ଯଥା—

ଯୁବତୀ ସେବତୀ ପାଖଡ଼ା ମିଶାଇ
ଘନସାର ଚୂର ବଞ୍ଛିଲେ । ଲା. ବ.

ବଟା, ବି. (ବାଟା ଶବ୍ଦର ଅପଭ୍ରଂଶ—ସଂସ୍କୃତ ଭାରତରେ ଏହି ବାଟା ପଦ ଉକ୍ତ ଅଛି) କ୍ରୀଡ଼ନାର୍ଥ ଲୌହ ଗୁଟିକା । ଯଥା—

ସେ ଲୁହା ଗୁଟିକାଟି ଖେଳ ଉନ୍ମତ୍ତରେ ।
ପଡ଼ିଲା ସେ ଯାଇ ଗମ୍ଭୀର କୂପରେ,
ସେ ବଟା ଆଣିବାକୁ ସମସ୍ତ କୁମରେ । କୃ.ଭ ଆ.ପ.

ବଟାଲ, ବଟାଳିଆ, ବଂ. (ଦେଶଜ) ଅଜା-
ଡିଆ । ଯଥା—
ଏବେ ସେ ବଷ୍ଟସ ହୋଇ ପେଟବକଲିଆ,
ହେଲେଣି ପନ୍ଦର ଅଣା ଦାଣ ବଟାଳିଆ । ଉ·ସା·୧୮·୯·
ଅପବନ । ଯଥା—
ଏଡ଼େ ଗର୍ବ କର ଯେ ବଟାଳ କଲୁ ଦେହ ।
ନୃ. ପୂ. ପ୍ର. ତ.

ବଟୋଳ, ବଂ. (ଦେଶଜ) ଦୁଷ୍ଟ । ଯଥା—
ହିଂସ୍ରକ କୁଟିଳ ଯେହ୍ନ ଦାମ୍ଭିକ ବଟୋଲ । ନୃ.ପୂ.

ବଡ଼୍, ବ. (ବଟ୍ ଶବ୍ଦଜ) ମଳ । ବଂ. ଦୁର୍ଗନ୍ଧ ।

ବଡ଼ା, ବ. (ଦେଶଜ) ଗୋଷ୍ଠ । (ବଡ଼୍ ଭେଦନାର୍ଥ ଧାତୁଜ) ପରୀକ୍ଷା କରିବା । ବଂ. ପରୀକ୍ଷାଦ୍ୱାରା ନିଷ୍ଟିତ କରାଯାଇଥିବା । ଯେପରି—ବଡ଼ା ଔଷଧ ।

ବଡ଼, ବ. (ଦେଶଜ) ଗୋଷ୍ଠ । ଯଥା—
ଆବର କୁଶବଡ଼ ଧରି, ପବନ୍ତୁ ଗଳ୍ପ ଖର କରି । ମା·ମା.
ସାନକଳସି । (ବଟୀ ଶବ୍ଦଜ) ପାନଖିଲ ।

ବଡ଼ିଆ, ବ. ସ୍ତ୍ରୀ. (ବଟିକା ଶବ୍ଦଜ) ପାନଖିଲ । ଯଥା—
ପଞ୍ଚଗ୍ରାସ ସାରି ବଡ଼ିଆ ଲାଗି,
ବୋଲେ ବସି ମଧୁଶଯ୍ୟାରେ ପ୍ରବେଶ ବେଗି । ବ.ଗ୍ରା·

ବଡ଼ିବା, କ୍ରି. (ଭେଦନାର୍ଥ ବଡ଼୍ ଧାତୁଜ) ପରଖିବା; ନିଷ୍ଚୟ କରିବା । ଯଥା—
ବଡ଼ିଥିବ ପରୀକ୍ଷା କରି ସେହ୍ନ,
ବଡ଼ି ଶବ୍ଦେ ଶୁଝିଲ ଆଜ ଯାହ୍ନ । ବୈ. ବ.

ବଡ଼ବଡ଼ା, ବଂ. (ଗଡ଼ଜାତରେ) ଅସ୍ତବ୍ୟସ୍ତ ।

ବଣ୍ଡା, ବଣ୍ଡି, ବ. (ଦେଶଜ) ବସ୍ତ୍ର ଓ ପାଳ ପ୍ରଭୃତିର ଗୁଳା ଏବଂ ଟେଳା । ଯଥା—
କୁରୁଳ ପାରଣ ଯେବେ ଧରଣ ମାରନ୍ତି,
ବଣ୍ଡା ଟେକା କେହ୍ନ ଦୂରହୁଁ ଯେ ଫୋପାଡ଼ନ୍ତି ।
ସା. ଭ୍ର. ଆ.
ମାଟିଆଦିର ମେଞ୍ଚା । ଯଥା—
କେ ବୋଲେ ଗୋବରବଣ୍ଡା ମାରି ଅସୁରକୁ ।
ନୃ. ପୂ. ଚ. ଡ.
କନ୍ଦୁକ; ପାଦଗଣ୍ଠି ଆଦିରେ ଜନିତ କର୍କଶ ମାଂସଗୁଟିକା ।

ବତ, ବ. (ବିତ୍ତ ଶବ୍ଦର ଅପଭ୍ରଂଶ) ଧନ ।

ବତପନ, ବଂ. (ଦେଶଜ) ଧାପ୍ତ, ଶୋଭାଯୁକ୍ତ । ଯଥା--
ଅଙ୍ଗୁଳିରେ ମୁଦ୍ରିକା ଦିଶଇ ବତପନ । ନୃ. ପୂ.

ବତି, ବ. (ଦେଶଜ) ପଶା ବା ସକଟା ଖେଳରେ ଦୁଇ କାଠିରେ ତିନ ତିନ ପଡ଼ିବା ଦାନ ।

ବତିବା, କ୍ରି. (ଦେଶଜ) କାଟିବା ।

ବତିବା, ବତିଯିବା, କ୍ରି. (ଦେଶଜ) ଯାପିତ ହେବା । ଯଥା—
ଏକା ପ୍ରୀତି ବାଲା ନୁହେ ଫଳବତୀ,
ବର୍ଷ ପରେ ବର୍ଷ ଯାଏ ରେ ବତି । ଉ. ସା.

ବଦ, ବଦମାଳି, ବ. (ଦେଶଜ) ବାହୁର ଅଳଙ୍କାରବିଶେଷ । ଯଥା—
ମୁକୁଟ କୁଣ୍ଡଳ ତାଡ଼ ବଦ ଯେ ମୁଦ୍ରିଡ଼ । ସା. ଭ୍ର. ସ.
ବଦମାଳି ପାଟବ୍ରତ, ତାଡରେ ଭୁଜ ଦୀପିତ । ଲ୍ଲ. ବ.
କଣ୍ଠର ଅଳଙ୍କାରବିଶେଷ । ଯଥା—
କଣ୍ଠେ ମୁକୁତା ବଦମାଳି । ଭ୍ର. ଦ. ସ୍କ.

ବଦା, ବ. (ବିଦାରି ଶବ୍ଦର ଅପଭ୍ରଂଶ) ଧାନ-ଗଛ ସାନ ହୋଇଥିବା ସମୟରେ ଚଷି ସେଗୁଡ଼ିକର ଚେର ଛିଣ୍ଡାଇବା ନିମିତ୍ତ ଲୁହାକଣ୍ଟାଯୁକ୍ତ କାଷ୍ଠନିର୍ମିତ କୃଷିସାଧନ ଅସ୍ତ୍ର ।
ବଦାପୂ, ମେଲାଣି । ଯଥା—
ବୋଧି ବଦାକରି ଭଗବନ୍ତଙ୍କ । ବ. ଚ. ମ.

ବଦାକ, ବଦାପୂ, ବ. (ଦେଶଜ) ମେଲାଣି ।

ବଦାଡ଼ିବା, କ୍ରି. (ବି-ଦୃ ଧାତୁଜ, ର=ଡ଼) ବଦାଟିବା । ଯଥା—
ଶାଖା ଭ୍ରମୁମାନଙ୍କର ବାନରଙ୍କ ଘର,
ଶାଖାମୃଗ ନାମ ତେଣୁ ଦେଇଛନ୍ତି ନର ।
ଖରବେଳେ ନିର୍ଭୟରେ ବସି ଧାଡ଼ି ଧାଡ଼ି,
ପୋକ ମାରନ୍ତି ଅନ୍ୟୋନ୍ୟ ଦେହକୁ ବଦାଡ଼ି । ବୃ. ସ୍ଥ.

ବଦାବଦ, ବ. ବଦାପୂ, ମେଲାଣି ।

ବଦୂ, ବ. (ଦେଶଜ) ପଶାଖେଳରେ ଦୁଇ କାଠିରେ ଦୁଇ ଦୁଇ ପଡ଼ିବା ଦାନ । ବଂ. (ବଦ୍‌ବତ୍ ଶବ୍ଦଜ) ପଣ୍ଡିତ, ବଦ୍ୟାବନ୍ତ । ଯଥା—

ଶ୍ୱେତ ଗ୍ରମରମାନ ପଡ଼ଇ ଚଉକଡ଼,
ବଦୂଜନମାନେ ଶୁଭମଙ୍ଗଳ ବାଞ୍ଛିନ୍ତ । ନୃ. ପୁ. ପ. ଚ.

ବଦୁଜନ, ବ. (ବଦ୍ୱଜ୍ଜନ ଶବ୍ଦଜ) ପଣ୍ଡିତବ୍ୟକ୍ତ ।

ବଦ୍ୟୁ, ବ. ( ବଦ୍ୟୁତ୍ ଶବ୍ଦର ଅପଭ୍ରଂଶ ) ବଜୁଳି । ଯଥା—

ଅନ୍ୟୋନ୍ୟରେ ହୋଇ ବାଟରେ ଭେଟାଭେଟି,
ଗର୍ମିଲେ ବଦ୍ୟୁପରି ଆକାଶେ ଚହଟି । କୃ. ଖ. ବ. ପ.
(ବଦ୍‌ବତ୍ ଶବ୍ଦଜ) ବଦ୍ୟାବନ୍ତ । ଯଥା—

ଅଦ୍ଭୁତ ଦେଖି ବଦ୍ୟୁଜନେ,
ଯେସନେ ତୋଷ ହୋନ୍ତ ମନେ । ଖ. ଦ. ସ୍କ.

ବଦ୍ରୂପ, ବ. (ଦେଶଜ) ପରିହାସ; ତାମସା ।

ବଧା, ବ. (ଦେଶଜ) ମୁଷ୍ଟିପ୍ରହାର ।

ବଧାତ, ବ. ( ବଧାତୃ ଶବ୍ଦର ଅପଭ୍ରଂଶ ) ବ୍ରହ୍ମା । ଯଥା—

ନାରଦ ଋଷିଙ୍କି ଯାହା କହିଲେ ବଧାତ । ନୃ.ପୁ ପ୍ର.ଚ.

ବଧାବଧି, ବ. (ଦେଶଜ) ଅନ୍ୟୋନ୍ୟ ବଧା ମାରିବା ।

ବନଶ୍ୟନ୍ତ, ବ. (ନଶ୍ ଧାତୁଜ) ନାଶ । ଯଥା—

କୁଳାଙ୍ଗାର ପୁତ୍ର ଯାର ଜନ୍ମଇ ବଂଶରେ,
ସମୂଳେ ବନଶ୍ୟନ୍ତ କରଇ ଅନ୍ୟାଗ୍ରରେ । ନୃ.ପୁ.ସ.ଚ.

ବନା, ବ. (ଦେଶଜ) ଗଞ୍ଜାପା ସାରରେ ଏକ ଠାରୁ ଦଶ ପର୍ଯ୍ୟନ୍ତ ଲିଖିତ ଚିପଚିହ୍ନ; ଦସ୍ତ ଖେଳରେ ଅପ୍ରଧାନ ସାର । ( ଅନ୍ୟାର୍ଥ ଅବର୍ଗୀୟ 'ବ' ସ୍ଥଳେ ଦେଖ । )

ବନାମା, ବ. (ଦେଶଜ) ଏକପ୍ରକାର ଜୂତା ବା ପାଦରକ୍ଷକ ।

ବନାମାଗିବା, କ୍ରି. (ଦେଶଜ) ଜୁଗି ଖେଳର ଆରମ୍ଭରେ ଅନ୍ୟ ଉଚ୍ଚକ ସାର ବଦଳ ମାଗିବା ।

ବନାମାରିବା, କ୍ରି. (ଦେଶଜ) ହାକମ ସାର ଦେବାକୁ ନ ଥିଲେ ବନା ସାର ଦେବା ।

ବନୁ, ଅଂ. ( ବନା ଶବ୍ଦଜ, ପ୍ରାକୃତ ବଣୁ ଶବ୍ଦଜାତ ) ବନା ଅର୍ଥାତ୍ ବ୍ୟତିରେକେ । ଯଥା—

ଘନ ବନୁ ନର୍ମଳ ହୋଇଲା ଆକାଶ । ରୁ. ସୁ.

ବନୋଇ, ବଂ. (ବନସ୍ଥୀ ଶବ୍ଦଜ) ବନସ୍ଥବନ୍ତ । ଯଥା—

ବନୋଦ ଯେଉଁ ଗମାରେ କରିବ ମତ,
ବନୋଇ ନୋହୁଁ ଧରିବ ମୁଁ ସେହି ମୂର୍ତ୍ତି । ବୈ. ବ.
(ବନସ୍ଥ ଶବ୍ଦଜ) ବନସ୍ଥ ।

ବନୋଇବା, କ୍ରି. ( ବନସ୍ଥ ଶବ୍ଦଜ ) ବନସ୍ଥ ହେବା । ଯଥା—

ଅନେକ ଧନ ବସ୍ତ୍ର ଦେଇ,
ସମସ୍ତେ କହନ୍ତ ବନୋଇ । ଦା. ର.

ବନୋନ, ବ. ( ଦେଶଜ ) ଯେଉଁ ନଦୀ ପାର ହେବାକୁ ଆସନ୍ତ ।

ବନ୍ଦୁ, ବ. (ବନ୍ଦ = ଅବୟବୀଭୂତ ହେବା-ଉ) ଦ୍ରବଦ୍ରବ୍ୟର କଣା; କ୍ଷୁଦ୍ରଚିହ୍ନ; ଅନୁସ୍ୱାର; ଭ୍ରୂମଧ୍ୟ ।

ବନ୍ଧ, ବ. (ବ୍ୟଧ୍ ଧାତୁଜ) ଛିଦ୍ର, କଣା ।

ବନ୍ଧଣ, ବ. ( ଦେଶଜ ) ରତି ସମୟର କର୍ଷଣାକର୍ଷଣ । ଯଥା—

ଷୋଳକଳା ସୁରତ ବନ୍ଧଣ ଆଲିଙ୍ଗନ,
ଚୌଷଠି ପାରିବନ୍ଧ ଛନ୍ଦାଣୋଇ ବନ୍ଧଣ । ନୃ.ପୁ.ପ୍ର.ଚ.
ବନ୍ଧିବା ।

ବନ୍ଧା, ବ. (ବ୍ୟଧ୍ ଧାତୁଜ) ଟଣା, ବ୍ରଣାଦିର ବ୍ୟଥା; ଶର ବନ୍ଧିବା; ଫୋଡ଼ିବା । ବଂ. ( ବନ୍ଧ ଶବ୍ଦଜ ) ଯାହାକୁ ବନ୍ଧାଇଁ । ଯଥା—

କାମଶରେ ବନ୍ଧା ବରହ ଅନଳେ
ଦଗଧ ହେଉଅଛୁ ନାଥ । କୋ. ବ୍ର. ସୁ.

ବନ୍ଧାଇବା, କ୍ରି. (ବ୍ୟଧ୍ ଧାତୁଜ) ଫୋଡ଼ାଇବା ।

ବନ୍ଧାଣ, ବ. (ଦେଶଜ) ମଲ୍ଲଯୁଦ୍ଧ । ଯଥା—

ହୋଇ ଶିଷ୍ୟଗଣ କରନ୍ତ ବନ୍ଧାଣ
ବଳବାନ କଷାକଷି । କୋ.ବ୍ର.ସୁ.
ବନ୍ଧିବା ।

ବନ୍ଧାଣି, ବ. (ବଧାଗ୍ନି ଶବ୍ଦଜ) କାରିଗର ।

ବନ୍ଧାଣିଗାଇ, ବି. (ଦେଶଜ) ବଢ଼େଇମାନଙ୍କର ଏକପ୍ରକାର କୁଳାଧିକାରୀ; ପ୍ରଧାନ କାରିଗର ।

ବନ୍ଧାବନ୍ଧ, ବି. (ଦେଶଜ) ଅନ୍ୟୋନ୍ୟ ବାନ୍ଧିବା ।

ବିନ୍ଧିବା, କ୍ରି. (ବ୍ୟଧ୍ ଧାତୁଜ) ବ୍ରଣାଦି ବ୍ୟଥା କରିବା; ଫୋଡ଼ିବା; ଧନୁରୁ ଶର ଛାଡ଼ିବା ।

ବିନ୍ଧୁଣି, ବିନ୍ଧୁଣୀ, ବି. ସ୍ତ୍ରୀ. ( ବ୍ୟଧ୍ ଧାତୁଜ ) ସୂଚୀବିଶେଷ ।

ବିପତ୍ତି, ବି. (ବିପତ୍ତି ଶବ୍ଦର ଅପଭ୍ରଂଶ) ଆପଦ ।

ବପନ, ବି. (ବପନ ଶବ୍ଦଜ) କ୍ଷୌର ।

ବିପାଠ, ବି. ସଂ. ବାଣ, ଶର । ଯଥା—

ବିକର୍ଣ୍ଣ ତାହା ଦେଖି ପଢ଼ି ମନ୍ତ୍ରପାଠ,
ଅର୍ଜୁନଙ୍କୁ ବିନ୍ଧିଲେ ବାଛିଣ ବିପାଠ । କୃ. ଭା. ବି. ପ.

ବିବି, ବି. ସ୍ତ୍ରୀ. ( ଯାବନିକ ) ରାଣୀ; ମାନ୍ୟା ଭଦ୍ରମହିଳା ।

ବିଭୋଳ, ବିଭୋଳ, ବିଭୋଳା, } ବିଂ. (ବିହ୍ୱଳ ଶବ୍ଦଜ, ପ୍ରାକୃତ ବିଭ୍ଭଳ ଶବ୍ଦଜାତ) ବିହ୍ୱଳ । ଯଥା—

ଯେସନେ ରମଣର କାଳେ,
ନଖଦନ୍ତ ଘାତେ ବିଭୋଳେ । ଦା. ର.
କାଦମ୍ବିନୀ ପାନେ ପ୍ରଭୁ ସବ ବିଭୋଳା । ମ. ସଂ.

ବିଭୋଳବା, ବିଭୋଳବା, କ୍ରି. (ବିହ୍ୱଳ ଶବ୍ଦଜ, ପ୍ରାକୃତ ବିଭ୍ଭଳ ଶବ୍ଦଜାତ) ବିହ୍ୱଳ ହେବା । ଯଥା—

ବିଭୋଳଲେ ବିଘାତଶୈଳେ ଯଥା ଫୁଲେ । ବୈ.ବି.
ପୁଲକ ହେଲା ରୋମାବଳୀ,
ବଚନ କହିଲା ବିଭୋଳି । ଦା. ର.

ବିଭା, ବି. (ବିବାହ ଶବ୍ଦଜ) ବିବାହ ।

ବିଭାଇ, ବି. ସ୍ତ୍ରୀ. (ବିବାହୀ ଶବ୍ଦଜ) ବିବାହିତା । ଯଥା—

ବିଭାଇ ଭାର୍ଯ୍ୟାରେ ଯେବେ ନୋହିଲା ସନ୍ତତି । ସା.ଭା.ଆ.

ବିଭୋର, ବିଭୋଳ, } ବିଂ. ( ବିହ୍ୱଳ ଶବ୍ଦଜ ) ବିହ୍ୱଳ, ଉନ୍ମତ୍ତ ।

ବିଭୁକ୍ଷୁ, ବିଂ. (ଭୁଜ୍-ସନ୍-ଉ) ଦାହେଛୁ । (ବିଶେଷ୍ୟରେ ବିଭୁକ୍ଷା ହୁଏ ।)

ବିଭର୍ତ୍ତୃ, ବିଂ. ( ଭୃ-ତୃ ) ଧାରଣକାରୀ; ପୋଷଣକର୍ତ୍ତା ।

ବିମ୍ବର, ବି. (ବିବର ଶବ୍ଦଜ) ବିବର; ସୁଡ଼ଙ୍ଗ ।

ବିଯୋଡ଼, ବିଂ. (ଦେଶଜ) ଅମିଳନ; ଭିନ୍ନ । ଯଥା—

ଘଉଡ଼ିବାଯାଏ ମୁଁ କପାଁ ଘରେ ଥିବ,
ପୁଅକୁ ଯେନ ମୋର ବିଯୋଡ଼ ହେବ । ନୃ. ପୁ.

ବିରସଗପ, ବି. ( ଦେଶଜ ) ମଦ୍ୟବିଶେଷ **(Ale)** ।

ବିରାଜ, ବି. (ବି-ରାଜ ଶବ୍ଦରୁ ଜାତ କିମ୍ବା ଦେଶଜ) ଯେ କୌଣସି ଜାତି କିମ୍ବା ଜାତିର ଶ୍ରେଣୀ । ଯେପରି—ସେ ଲୋକ ଆମ ବିରାଜର ନୁହେ ।

ବିରାଟି, ବି. (ବୈରାଟି ଶବ୍ଦର ଅପଭ୍ରଂଶ)ବିରାଟ-ପୁତ୍ର; ଉତ୍ତର କୁମର । ଯଥା—

ପରମ ସାନନ୍ଦେ ଏହା କହିଲେ କିରୀଟୀ,
ଶୁଣି ଅନେକ ସାନନ୍ଦ ହୋଇଲେ ବିରାଟି । ସା ଭା.ବି.

ବିରାଡ଼ି, ବି. (ବିଡ଼ାଳ ଶବ୍ଦଜ) ମାର୍ଜାର ।

ବିରାଡ଼ିଆଖିଆ, ବିଂ. (ଦେଶଜ) ବିରାଡ଼ି ଆଖିପରି ଆଖି ଯାହାର ।

ବିରାଡ଼ିଆବାକୋଇ, ବି. (ଦେଶଜ) ବିରାଡ଼ି ବର୍ଣ୍ଣ ପରି ଅଳ୍ପ କଳା ଓ ହଳଦିଆ ମିଶ୍ରିତ ବର୍ଣ୍ଣ; ମହୀପାଳ ଧାନ ।

ବିରି, ବିର୍‌ହି, ବି. (ବ୍ରୀହି ଶବ୍ଦଜ) ଏକପ୍ରକାର ଶସ୍ୟ । (ପାକୁଆ ଶବ୍ଦ ଦେଖ ।)

ବିରୂଜ, ବି. (ବୀର୍ଯ୍ୟ ଶବ୍ଦଜ) ଶୁକ୍ର । ଯଥା—

ମୋହନବଂଶୀଏ ମୁହିଁ ସଜାଡ଼ିଣ ଥିବ,
ଧରଲକ୍ଷଣି ବିରୂଜ ଅଙ୍ଗୁ ଯିବ ସ୍ରବ । ନୃ. ପୁ. ପ୍ର. ଚ.

ବିରୁଡ଼ି, ବିରୁଳି, ବି. (ବରଟା ବା ବରୋଳ ଶବ୍ଦଜ) ବିଷାକ୍ତ ଦଂଶକ କୀଟବିଶେଷ ।

ବିରୁଳ, ବି. (ଦେଶଜ) ବୃକ୍ଷବିଶେଷ । ଯଥା—

ଆହେ ବିରୁଳ ମୋର ମଧ୍ୟମା ସରୁ,
ଦେଖିଛ ରମ୍ଭାତରୁ କି ମୋ ରମ୍ଭୋରୁ । ବି. ଗୀ.

ବିରୋଳ, ବିଂ. (ଦେଶଜ) ବ୍ୟକ୍ତ । ଯଥା—

ଲତା ଗହନ ବୃକ୍ଷମୂଳେ,
ଚରଣ ଦେଖିଲା ବିରୋଳେ । ଭା. ଏ. ସ୍କ.

ବଲ, ବି. (ବଳ୍ଲ ଶବ୍ଦର ଅପଭ୍ରଂଶ) କ୍ଷେତ୍ର, କଆର । ଯଥା—

ଜଳେ ପୂରଇ ନଦୀ ବଲ ପୋଖରୀ । ଗ୍ରା. ମା.

ବଲଗ, ବି. ( ବିଲଗ୍ନ ଶବ୍ଦର ଅପଭ୍ରଂଶ ) ଅସଂଯୋଗ । ଯଥା—

ହୃଦ ବଲଗରୁ ଭଜିଲୁ ନନ୍ଦ । ଲ. ବ.

ବିଂ. ଭିନ୍ନ ବା ଅନ୍ତର । ଯଥା—

ବଲଗ ହେଲେ ଉରୁଁ ଉର । ଲ. ବ.

ବଲାଇ, ବଲେଇ, ବିଲି, } ବି. ( ବିଡ଼ାଳ ଶବ୍ଦଜ ) ବିଗଡ଼ି ।

ବଲଙ୍କିବା, ବଲଙ୍ଗିବା, } କ୍ରି. (ଦେଶଜ) ସୁସଜ୍ଜ କରି ରଖିବା ଦ୍ରବ୍ୟ ଏଣେ ତେଣେ ଘାଣ୍ଟିବା, ଲେଞ୍ଜାର ମେଞ୍ଜାର କରିବା ।

ବିଲାତ, ବି. ( ଆରବୀ ) ମୁସଲମାନମାନେ ଆପଣା ଦେଶ ଛଡ଼ା ଅନ୍ୟ ଦେଶକୁ ବିଲାତ କହନ୍ତି, କିନ୍ତୁ ବର୍ତ୍ତମାନ ଏହାର ଅର୍ଥ ଇଙ୍ଗ୍ଲଣ୍ଡ ।

ବିଲାତିଆଳୁ, ବି. ଇଂଲଣ୍ଡଦେଶୀୟ ବା ବିଦେଶୀୟ ଆଳୁକନ୍ଦ ।

ବିଲାସୁଣୀ, ବି. ସ୍ତ୍ରୀ. (ବିଳାସିନୀ ଶବ୍ଦଜ) ସ୍ତ୍ରୀ । ଯଥା—

ମୁହିଁ ରତିଶାସ୍ତ୍ରେ ଜିତା ବେଶ୍ୟାନ୍ତ ବଳସି,
କୋଟି ବଳାସୁଣୀ ମୁଁ ରମଇ ନିତ ନିଶି । ସା.ଭା.ଆ.

ବଲବଲା, ବି. (ଦେଶଜ) ଏକପ୍ରକାର ମସ୍ତକରୋଗ ।

ବଲବଲାଇବା, ବଲବଲେଇବା, } ବି. ( ଦେଶଜ ) ନିଦ-ବାଉଳାରେ ବକିବା ।

ବିଲୁଆ, ବି. (ବିଳୌକା ଶବ୍ଦଜ) ଶୃଗାଳ ।

ବଲୋହିବା, କ୍ରି. (ଦେଶଜ) ସମ୍ମାନ ବା ସତ୍କାର କରିବା । ଯଥା—

ବିଦେହ ରାଜନ ଭୋଜ ସମ୍ଭାର ଭିଆଇ,
ବଲୋହିଲେ ଦଶରଥ ବନ୍ଧୁବର୍ଗ ନେଇ । ବୈ. ବ

ମନ ରଞ୍ଜାଇବା । ଯଥା—

ବଧୂ ତନଙ୍କି ଯେ ସ୍ତ୍ରୀଶରହି ଧେନ,
ବଲୋହିଲେ ଅମୂଲ୍ୟ ରତନ ଧନ । ବୈ. ବ.

ଆଚରିବା । ଯଥା—

ବାହୁଡ଼ିଲା ଗ୍ରେଷେ କାମବଶେ ଭ୍ରମିତା,
ବଲୋହୁ ମୋତେ ଯେସନେ ନଷ୍ଟ ଯୋଷିତା । ବୈ.ବ.

ବଶ, ବି. (ଗଡ଼ଜାତ) ପ୍ରଗଣା ।

ବଶଷ୍ଠ, ବି. (ବିଶ୍ରବସ୍ ଶବ୍ଦଜ) ଋଷିବିଶେଷ । ଯଥା—

ପୌଲସ୍ତି ନାରଦ ବଶଷ୍ଠ ଶିଷ୍ୟ ମୂଳେ,
ଦେବର୍ଷିମାନେ ବସେ ସଭାର ମଣ୍ଡଳେ । ସା.ଭା ଆ.

ବଶା, ବିସା, ବି. (ବିଶ୍ୱା ଶବ୍ଦଜ ପ୍ରାକୃତ) ଅଠର, କୋଡ଼ିଏ ବା ବାଇଶି ପଲ ପରିମାଣ ଓଜନ ।

ବଶାବଳି, ବଷାବଳି, } ବି. (ଦେଶଜ) ଦେବୀଙ୍କ ନିକଟରେ ଦେବା ବଳି । ଯଥା—

ପଛେ ତୋର ମୁଣ୍ଡ ମୋଡ଼ି ଦେବ ବଶାବଳି । ସା.ଭା.ଆ.

ତୁମ୍ଭଙ୍କୁ ଆଣିଅଛୁ ଧରି,
ହାଣିଣ ଦେବ ବଶାବଳି । ଭା. ଦ. ସ୍କ.

ବଶାଶଏ, ବଶାଶତ, ବିଂ. (ବିଂଶ-ଶତ ଶବ୍ଦଜ) ୧୨୦ ସଂଖ୍ୟା ।

ବଶୁଆସ, ବସୁଆସ, ବି. (ବିଶ୍ୱାସ ଶବ୍ଦଜ) ବିଶ୍ୱାସ । ଯଥା—

ଦୁର୍ଯ୍ୟୋଧନର ବଶୁଆସେ,
ପ୍ରଜାପାଳନା ନିଜ ଦେଶେ । ଭା. ଦ. ସ୍କ.

ବଶେ, ବଷେ, ବି. (ବିଷୟ ଶବ୍ଦଜ) ବିଷୟ । ଯଥା—

ସଖୀଏ ଜାଣନ୍ତି ବଶେ ଯେ, ବେଗରେ ତଇଲ ଯୋଗରେ ଶଇଳସ୍ତନାଏ କଲେ କୋମଳ ଯେ । ଲ. ବ.

ବଶୋଇ, ବଷୋଇ, ବସୋଇ, } ବି. (ବିଷୟୀ ଶବ୍ଦଜ) ରାଜଦତ୍ତ ଉପାଧି-ବିଶେଷ ।

ବିଂ. ବିଷୟାସକ୍ତ । ଯଥା—

ମିଥ୍ୟା କହିବେ ନିରନ୍ତର,
ବଶୋଇ ହୋଇବେ ଆଦର । ବ. ପୁ.

ବଶୋଇବା, ବସୋଇବା, ବଷୋଇବା, } କ୍ରି. (ବିଶ୍ରାମ ଶବ୍ଦଜ) ବିଶ୍ରାମ କରିବା । ଯଥା—

ବାଟେ ସେ ବନରେ ପଡ଼ିଥିଲା ଦ୍ରବ୍ୟ ଶିଳା,
ବଶୋଉଁ ରାମ ଚରଣ ଲାଗି ଅବଳା । ବୈ. ବ.

ସଞ୍ଚିତ କରି ରଖିବା । ଯଥା—
ପାଣ୍ଡୁ ବୋଇଲେ ସିଝାଇଲା ପକ୍ୱ ଅନ୍ନ,
ବିଶୋଇଲେ ଅଳପ ହୁଅଇ ଯେ ବିଧାନ । ସା.ଭା.ଆ.
(ଦେଶଜ) ବାଜିବା । ଯଥା—
ବିସୋଇଲା ଯେ ଲକ୍ଷ୍ମଣ ଅଙ୍ଗେ,
ବିଜ୍ଞାନ ସେ ଯଥା ଛୁଇଁ ନାଗେ । ବୈ. ବି.
ପ୍ରବେଶିବା । ଯଥା—
ବିସୋଇଁ ଅନୁସରି ଯହିଁ କୋଦଣ୍ଡଧାରୀ
ପ୍ରଶଂସି କୋଳକୁ ଆଦରି । ବୈ. ବି.
ସ୍ପର୍ଶ କରିବା ।

ବିଶ୍ୱା, ବି. (ଦେଶଜ) ଭୂମିର ପରିମାଣବିଶେଷ ଅର୍ଥାତ୍ ଗୁଣ୍ଠର ଷୋଳ ଭାଗରୁ ଏକ ଭାଗ ।

ବିଷ, ବିଷେ, ବିଷୟୀ, ବି. (ବିଷୟ ଶବ୍ଦଜ ଏବଂ ତାହାର ଅପଭ୍ରଂଶ) ବିଷୟ । ଯଥା—
ଆନ କେ ବୋଇଲା ତୁ ନ ଜାଣୁ ବିଷେ କିଛି ।
ବି. ଚି. ମ.
ଚନ୍ଦନଯାତ୍ରାର ଯେତେ ଭୁଞ୍ଜିବା ବିଷୟୀ,
ଜଣା ପାଇଲେ ହେବ ଅକ୍ଷୟ ତୃପ୍ତାସ୍ଥା । ନୃ.ପୁ.ତୃ.ତ.

ବିଷାଇବା, କ୍ରି. (ବିଷ ଶବ୍ଦରେ ଓଡ଼ିଆ କ୍ରିୟା-ରୂପ) ବିଷାକ୍ତ କରିବା । ଯଥା—
ଅଞ୍ଜନ ରଞ୍ଜି ନୟନେ ବୋଇଲା କେ ଏତେ,
ଏ ଶର ବିଷାଇବାକୁ ଯୁବା ଧୈର୍ଯ୍ୟ କେତେ । ଲା. ବ.

ବିଷି, ବି. (ବିଷୟ ଶବ୍ଦଜ) ଗ୍ରାମସମୂହ ।

ବିଷୁଆଳ, ବିଶାଳ, } ବି. (ବିଷୟପାଳ ଶବ୍ଦଜ) ଓଡ଼ିଆ ନାମକ ଶୂଦ୍ରଜାତିର ଉପାଧି-ବିଶେଷ ।

ବିସ, ବି. (ବିଷ ଶବ୍ଦଜ ପ୍ରାକୃତ) ବିଷ ।

ବିସର, ବିସୋର, ବିଷୋର, } ବି. (ବିସ୍ମର ଶବ୍ଦଜ) ପାସୋର । ଯଥା—
ନପୁଣ ଚଉ ହୋଏ ବିସୋର,
ଭଲ ନିଧି ନାମ ଦେଲେ କୁବେର । ଲା. ବ.

ବିସରିବା, ବିସୋରିବା, କ୍ରି. (ବିସ୍ମର ଶବ୍ଦଜ) ପାସୋରିବା ।

ବିସର୍ମି, ବିସରମ, ବିଂ. (ଦେଶଜ) ନିର୍ଲଜ୍ଜ । ଯଥା—
କାଞ୍ଚିତ ଭ୍ରମ ପାଇ ବିସର୍ମି ହେବାର କେଉଁ କାର୍ଯ୍ୟ ।
ର. କ.
(ବିଶ୍ରାମ ଶବ୍ଦଜ) ଶ୍ରମସ୍ଥାନ ।

ବିସାସ, ବି. (ବିଶ୍ୱାସ = ପ୍ରାକୃତ ବିସାସ ଶବ୍ଦଜ) ବିଶ୍ୱାସ ।

ବିସାସ୍, ବିସାସେ, ବିସାସହେ, } ବିଂ. (ବିଂଶ-ଶତ ଶବ୍ଦଜ) ୧୨୦ ସଂଖ୍ୟା ।

ବିସିମି, ବି. ସ୍ତ୍ରୀ. (ଦେଶଜ) ରସିକା । ଯଥା—
ମିଶି ଘସିଥିବା ବିସିମି ଯେସନ,
କରୁଥାଇ ଦନ୍ତ୍ୟବର୍ଣ୍ଣ ଉଚ୍ଚାରଣ । ଦ. ବା.

ବିସେସ, ବି. (ବିଶେଷ ଶବ୍ଦଜ ପ୍ରାକୃତ) କହୁତ ।

ବିହକ, ବିଂ. (ଦେଶଜ) ଅନୁଚିତ; ଅନର୍ଥ-କାରୀ; ଯେ ବିହଇ ଅର୍ଥାତ୍ କରଇ । ଯଥା—
ବିହଗ ଯୋଡ଼ାଏ, ବିହକ ପୁଣି ଏକାକୀ ପୀଡ଼ାଏ ।
ବୈ. ବି.

ବିହଡ଼ିବା, କ୍ରି. (ଦେଶଜ) ହୁରୁଡ଼ିବା । ଯଥା—
ଘୋର ରୂପ ଦେଖି ବିହଡ଼ିଲେ ସବୁ ଗାଈ,
ହେମା ଶବ କରିଣ ଉଠିଲେ ସର୍ବେ ଧାଇଁ । ସା.ଭା.ଆ.
ରୋଷାବିଷ୍ଟ ହେବା । ଯଥା—
ଅର୍ଜୁନର ସଙ୍ଗେ ଯେ ହୋଇଲେ ଯାଇ ଭେଟ,
ବିହଡ଼ନ୍ତି ଦ୍ୱିଜବରେ ମାରି ରେ ଗରଷ୍ଟ । ସା ଭା. ଆ.

ବିହନ, ବି. (ଦେଶଜ) ଧାନ୍ୟାଦିର ବୀଜ; ମାଛ ଡିମ୍ବ ବା ମଞ୍ଜି । (ଜାଗିରି ଶବ୍ଦ ଦେଖ ।)

ବିହନ୍ତା, ବିଂ. (ବିଧାତା ଶବ୍ଦଜ) ଯେ ବିଧାନ କରେ ।

ବିହା, ବି. (ବିବାହ ଶବ୍ଦଜ) ବିବାହ ।

ବିହାଙ୍କୁଡ଼ୀ, ବି. ସ୍ତ୍ରୀ. (ଦେଶଜ) ଲବିଅଙ୍କୁଡ଼ୀ ନାମକ ଔଷଧ ଗଛ ।

ବିହି, ବି. (ବିଧି ଶବ୍ଦଜ ପ୍ରାକୃତ) ବିଧାତା । ଯଥା—
ବିହି ବିହିଲା ବନବାସ ବାସରେ
ନୃପତି ହେବାର ନାଇ । ବୈ. ବି.

ବିହିବା, କ୍ରି. (ବି-ଧା ଧାତୁଜ, ଧା = ହି) କରିବା । (ବିହି ଶବ୍ଦ ଦେଖ ।)

ବିହୁନେ, ଅଂ. (ବିହୀନ ଶବ୍ଦଜ, ପ୍ରାକୃତ ବିହୁଣ ଶବ୍ଦ ଜାତ, ଅର୍ଥର ଅଳ୍ପ ଭେଦ) ବିନା । ଯଥା—
ଅନ୍ନ ବିହୁନେ ହଂସ ହାନି,
ଯୋଗ ସାଧିବ କାହା ଦେନି । ଭା. ଏ. ସ୍କ.
ବିଂ. ବିହୀନ ।

ବହୁଳବା, କ୍ରି. (ଦେଶଜ) ପ୍ରକାଶ ବା ପ୍ରଚାର କରିବା । ଯଥା—

ତେଣୁ ବନ୍ଧ ହୋଇ ଧାନ ଆଣିଲେ ମହର୍ଷି,
ପୃଥ୍ୱୀଯାକରେ ଦେଇଣ ବହୁଳରେ ବସି । ନୃ.ପୃ ଷ.ଛ.

ବହେଠନ, ବିଂ. (ଦେଶଜ) ନମ୍ର । ଯଥା—

ବହେଠନ ମୁଖ ପୟୋଧର ଶିଖ
ଦେଖି କେତେ ଯୋଖି ଉପମା । ବୈ. ବ.

ବହୋସ, ବିଂ. (ଯାବନିକ) ବୋଧଶୂନ୍ୟ ବା ଅଚେତନ ।

ବହ୍ନ, ବି. (ବୃଂହ ଶବ୍ଦଜ) ବୃଂହ । ଯଥା—

ଆପଣ ବହ୍ନଦ୍ୱାରେ ଲଗିଣ ଏକ ଥିବ,
ଭୀଷ୍ମଙ୍କ ସମାନେ ଧନୁ ଧରି ଆମନ୍ତ୍ରିବ । ନୃ. ପୃ. ସ. ଛ.

ବୀଭତ୍ସ, ବୀଭତ୍ସା, ବିଂ. (ବଧ୍ = ନିନ୍ଦା କରିବା-ସ, ଦ୍ୱିତ୍ୱ-ଅ, ଆ) ଅତ୍ୟନ୍ତ ଘୃଣାକର, ଅତି କଦର୍ଯ୍ୟ; କ୍ରୂର; ପାପୀ । ବି. ରସବିଶେଷ ।

ବୀଭତ୍ସୁ, ବି. (ବିଭତ୍ସ-ଉ) ଅର୍ଜୁନ, ଭାରତରେ ଅର୍ଜୁନ କହିଅଛନ୍ତି କି ମୁଁ ଯୁଦ୍ଧରେ କଦାପି ବୀଭତ୍ସ କର୍ମ କରି ନାହିଁ, ଏ ହେତୁ ମୋତେ ଲୋକେ ବୀଭତ୍ସୁ କହନ୍ତି ।

ବୀରବଉଳି, ବୀରବଲି, ବୀରବାଉଳି, } ବି. (ଦେଶଜ) କର୍ଣ୍ଣଭୂଷଣ-ବିଶେଷ । ଯଥା—

କେତେ ଶୋଭା ଧଲେ ବୃନ୍ଦୁ କର୍ଣ୍ଣଯୁଗେ ବୀରବଉଳି । ଉଷା.

ହନେ ଧୀରବଲି କଣିଲି ସୁବଇଠାରୁ ଠାରୁ । ସୁ. ପ.

ବୀର୍, ବି. (ଗଡ଼ଜାତଜ) କଥ ।

ବୀରଦ୍ଧ, ବି. (ବୀରଧ ଶବ୍ଦଜ) ମହାବୀର । ଯଥା—

ତେଣେ ନାଶ ହୋଇବ ଯେ ଦଇତ ବୀରଦ୍ଧ । ସା.ଙ୍ଗ.ଆ.
ବୀରରଚିତ ଉପାଧି ।

ବୀସ, ବିଂ. (ବିଂଶ ଶବ୍ଦଜ, ପ୍ରାକୃତ) ୨୦ ସଂଖ୍ୟା ।

ବୁଆ, ବି. (ଗଡ଼ଜାତ ଶବ୍ଦ, ଏ ଶବ୍ଦ କାବ୍ୟରେ ପ୍ରୟୋଗ କରାଯାଏ ନାହିଁ) ବାପା ।

ବୁଇ, ବି. ସ୍ତ୍ରୀ. (ଗଡ଼ଜାତ ଶବ୍ଦ) ଝିଅ ।

ବୁକ, ବି. (ବୁକ୍କନ୍ ଶବ୍ଦର ଅପଭ୍ରଂଶ) ବକ୍ଷଃସ୍ଥଳ ।

ବୁକପଠ, ବୁକପଠା, ବି. (ବୁକ୍କପଟ୍ଟିକା ଶବ୍ଦଜ) ଗୁଣ୍ଡି ।

ବୁକୁ, ବି. (ବୁକ୍କନ୍ ଶବ୍ଦଜ) ଗୁଣ୍ଡି । ଯଥା—

କୁମାରକୁ ଦେଖି ଫୁଲୁଅଛି ବୁକୁ । ର. କ.

ବୁକୁଚ୍ଚ, ବି. (ଦେଶଜ) ଗଣ୍ଡିଗୁ ବା କୋଳ ।

ବୁକ୍କନ, ବି. (ବୁକ୍କ = କୁକ୍କୁରାଦି ଶବ୍ଦ କରିବା-ଅନ) କୁକ୍କୁରାଦିର ଶବ୍ଦ ।

ବୁଙ୍ଖୀ, ବି. (ବାଲେଶ୍ୱର ପ୍ରାନ୍ତରେ) ଡେମ୍ପ ।

ବୁଜା, ବି. (ଦେଶଜ) ମୁଦିବା । ବିଂ. ମୁଦ୍ରିତ ।

ବୁଜିବା, କ୍ରି. (ଦେଶଜ) ମୁଦିବାର । ଯଥା—

ଅବଶେ ଆଖି ମୁଁ ବୁଜିଲି ଛନକେ । ନ. କେ.

ବୁଜୁଳା, ବୁଜିଳ, ବୁଜୁଳି, } ବି. (ଦେଶଜ) ଗଣ୍ଡିଗୁ । ଯଥା—

ଚନ୍ଦନ ଦେହେ ବୋଳୁ କନା ବୁଜୁଳା ଖସି,
ହାତରେ ଚପି ତାହା ଜାଣିଲେ ବ୍ରହ୍ମଋଷି । ନୃ.ପୃ.ସ.ଛ.

ଉଦର ନାଡ଼ୀ ।

ବୁଝ, ବୁଝା, ବୁଝାସୁଝା, } ବି. (ବୁଧ୍ ଧାତୁଜ, ପ୍ରାକୃତ ବୁଝ୍ ଧାତୁଜାତ ଏବଂ ପ୍ରାକୃତ ସୁଝ୍ ଧାତୁଜ) ବୋଧ ବା ବୁଝିବା । ଯଥା—

ସେମାନେ ବୁଦ୍ଧିମନ୍ତ ହେବାରୁ ଗଲେ ବୁଝ,
ଆମ୍ଭେ ତ ମାୟାରେ ପଡ଼ି ହେଉଅଛୁଁ ଗଞ୍ଜ ।
ନୃ. ପୃ. ଡ଼ୃ. ଛ.

ନଶୀ ପରି ଶଶୀ ଶଶାକୁ ବୁଝିଲେ
କି ହେବ ବୁଝାସୁଝାରେ । ଫ. ସ

ବିଂ. ଯେ ବୁଝେ । ଯଥା—

ବେଲବୁଝା ପାରିବନ୍ତ ଜ୍ୟୋତିର୍ବିଦ ପ୍ରାୟେ । ବୈ. ବ

ଜ୍ଞାତ । ଯଥା—

ତାହାଙ୍କ ନାମମାନ ଶୁଣିଲେ ହେବ ବୁଝା । ନୃ.ପୃ.ସ.ଛ.

ବୁଝଂଟ, ବିଂ. (ଦେଶଜ) ଯାହା ସମସ୍ତେ ବୁଝି ପାରିବେ । ଯଥା—

ସବୁର ନାମ ଗୋଟାଏ କରି ବୁଝଂଟ ଲବଜ ଦେଇଥିଲେ
ସମସ୍ତେ ବୁଝି ପାରିଥାନ୍ତେ । ଉ. ସା. ୧୮. ୯.

ବୁଝାଇବା, କ୍ରି. (ବୁଧ୍ ଧାତୁଜ, ପ୍ରାକୃତ ବୁଝ୍ ଧାତୁଜ) ସମଜାଇବା । ଯଥା—

ଝଟାଇ କୃଷ୍ଣ ବୁଝାଇ ଦେଲ ଯେ ଗୁପ୍ତ ତଥ୍ୟ ।
ବ. ଚ. ମ.

ମନାଇବା ।

ବୁଝାବଣା, ବୁଝାମଣା, ବି. (ଦେଶଜ) ନ୍ୟାୟାନ୍ୟାୟ ବିଚାର । ଯଥା—
ରୈତର ସର୍ବସ୍ୱ ହରିଲେ ବଞ୍ଚିବୁଁ କପଟ,
କିଛି ବୁଝାମଣା କରୁ ନାହାନ୍ତି ଦଣ୍ଡଧାରୀ । ବେ. ପ.

ବୁଝିବା, କ୍ରି. (ବୁଧ୍ ଧାତୁଜ ପ୍ରାକୃତ, ବୁଝ୍ ଧାତୁଜ) ଜ୍ଞାତ କରିବା, ଜାଣିବା । ଯଥା—
ଶୁଭାଶୁଭ ବୁଝିଲେ ସବୁ ଧ୍ୟାନ୍ତି । କୋ. ବ୍ର. ସୁ.

ବୁଝିଲାସୁଝିଲା, ବିଂ. (ଦେଶଜ) ବୁଝି ପାରୁଥିବା ବା ଜାଣିବା (ଲୋକ) ।

ବୁଠ, ବି. (ଦେଶଜ) ଶସ୍ୟବିଶେଷ ।

ବୁଠା, ବି. (ଦେଶଜ) ବସ୍ତ୍ରାଦିରେ ଚିହ୍ନିତ ଗୋଲାକାର ଚିହ୍ନ । ଯଥା—
ଆକାଶ ବାସେ ନକ୍ଷତ୍ରପନ୍ତି ବୁଠା ପ୍ରାୟେ,
ନୟନକୁ ଦିଶିଲେ ସବୁର ନରସ୍ୱେ । କୃ. ଭ. ସୌ. ପ.

ବୁଠୀ, ବି. ସ୍ତ୍ରୀ. (ଦେଶଜ) ବଂଶାଦିରେ ନିର୍ମିତ ପାତ୍ରବିଶେଷ; ଔଷଧବିଶେଷ । ଯଥା—
ମନୁଷ୍ୟର ସ୍ପୃଷ୍ଟ ମନୁଷ୍ୟ ଭ୍ରୂକୁଟୀ,
ହୋଇଛୁ ଜୀବନ ମରଣର ବୁଠୀ । ଦ. ବା.

ବୁଡ଼, ବି. (ଦେଶଜ ବା ବୁଡ଼୍ ଧାତୁଜ) ସ୍ନାନ । ଯଥା—
ବୁଡ଼ ବନ୍ଧ ପରଭୃତ ପରାକୃତ ନାମେ ଯେ । ବୈ. ବ.

ବୁଡ଼ଗାଳିବା, ବୁଡ଼ୁଗାଳିବା, କ୍ରି. (ଦେଶଜ) ଶିରଃସ୍ନାନ କରିବା ।

ବୁଡ଼ଣା, ବି. (ଦେଶଜ) ବୁଡ଼ିବା । ଯଥା—
ବୁଡ଼ଣା ହୋଇଲା ସ୍ଥଳେ,
ଅନଳ ଲଗିଲା ଜଳେ । ବୈ. ବ.
ବିଂ. ବୁଡ଼ିଯିବା ଏତେ ପରିମିତ (ଜଳାଦି) । ଯଥା—
ବୁଡ଼ଣା ନୀରେ ପଡ଼ି ଲଜରେ ଦୃଢ଼ ଆୟୁଷୁଁ ଜାଣି । ବୈ. ବ.

ବୁଡ଼ପାରିବା, କ୍ରି. (ଦେଶଜ) ମୁଣ୍ଡ ଧୋଇବା, ଶିରଃସ୍ନାନ କରିବା ।

ବୁଡ଼ା, ବି. (ଦେଶଜ) ପରିମାଣପାତ୍ରବିଶେଷ; ଲୁଚିବା । ଯଥା—
କପାଟ ନ ଫିଟୁଣୁ ଥିବଟି ବୁଡ଼ା ରନ୍ଧ୍ର,
ଯାହାନ୍ତି ଅବକାଶେ ପଶିବ ଧ୍ୱଂସାଇ । ନୃ. ପ୍ର. ପ. ଛ.
ନିମଜ୍ଜନ । ଯଥା—
ଶୁଣି କହେ ଦ୍ୱାରପାଳ, ନୋହେ ଏ ସଂଗ୍ରାମକାଳ ।
ଜଳବୁଡ଼ା କୁତୂହଳ କରେ ଭୂପାଳ ହେ । ବି. ଗ୍ର.
ଶିଆଳ । ବିଂ. ଯେ ବୁଡ଼ିଥାଏ । ଯଥା—
ଯହୁଁ ନୟନର ଭେଦେ ବଢ଼ାଇ,
ମୃଗକୁ ଦେଲି ନଗର ଛଡ଼ାଇ ।
ବୁଡ଼ା କରିଦେଲି ମୀନକମଳ,
ମୋ ସଙ୍ଗେ ହୋଇଥାଅ ବୋଲି ତୁଳ । ଲା. ବ.
ଯେ ବୁଡ଼ାଇଦିଏ; ଯେ ନାଶ କରିଦିଏ । ଯଥା—
କୁକାଟିକା ନିକଟକୁ କମନୀୟ ଜୁଡ଼ା,
କେତକୀ ପାଖୁଡ଼ା ବେଢ଼ା ନାଗ ଘରବୁଡ଼ା । ର. କ.

ବୁଡ଼ାଇବା, କ୍ରି. (ଦେଶଜ) ନାଶ କରିବା । ଯଥା—
ବୁଡ଼ାଇବେ ଯେ ଗୁଣ ଜ୍ଞାନ,
ବଢ଼ାଇ ଯାହାର ଏସନ । କୋ. ବ୍ର. ସୁ.
ଆସକ୍ତ କରିବା; ନିମଜ୍ଜିତ ବା ନିମଗ୍ନ ହେବା । ଯଥା—
ଅରଜୁନ ବୋଇଲେ ତୁମ୍ଭେ ଆମ୍ଭ ରାଜା,
ସତ୍ୟ ଧର୍ମ ଦୁଇରେ ବୁଡ଼ାଇଛ ମଜ୍ଜା । କୃ. ଭ. ବ. ପ.

ବୁଡ଼ାଣ, ବି. (ଦେଶଜ) ବୁଡ଼ିବା; ଯୁଦ୍ଧ ବ୍ୟାୟାମବିଶେଷ । (ଉଡ଼ାଣ ଶବ୍ଦ ଦେଖ) ବୁଡ଼ିଯିବା ଏତକ ଜଳର ପରିମାଣ । ବିଂ. ଜଳରେ ବୁଡ଼ିଥିବା । ଯେପରି— ବୁଡ଼ାଣ ଜମି ।

ବୁଡ଼ାପଡ଼ିବା, ବୁଡ଼ାମାରିବା, କ୍ରି. (ଦେଶଜ) ଲୁଚିବା । ଯଥା—
ଜଗିଲେ ବୁଡ଼ା ପଡ଼ି ମୁରରାଜା ଆଟ,
କାଙ୍ଗୋଲା ବସିଲା ସାହସ ଛଡ଼ିଲା
ଜଗି ପାଣିଦ୍ୱାର ବାଟ । ନୃ. ପ୍ର. ଦ୍ୱି. ଛ.
ଚଢ଼ିଲେ ଗଲେ ଇନ୍ଦ୍ର ପଳାଇଯିବ କାହିଁ,
ବୁଡ଼ାମାରି ଜଗିଥିବ ନିଶାକାଳେ ଯାଇ । ନୃ. ପ୍ର. ଦ୍ୱି. ଛ.

ବୁଡ଼ିବା, କ୍ରି. (ବୁଡ଼୍ ଧାତୁଜ) ନିମଜ୍ଜିତ ହେବା । ଯଥା—
ନବନାଗରୀ ଶୋକସାଗରେ ବୁଡ଼ିଲାଣି । ବି. ଚ. ମ.
ନାଶ ହେବା । ଯଥା—
ବଜ୍ର କି ପଡ଼ିଲା ସାହସ ଛଡ଼ିଲା
ଚେତନା ବୁଡ଼ିଲା ଗୃହଁ ଗୃହଁ । ବି. ଚ. ମ.
ଶେଷ ହେବା । ଯଥା—
ନ ପାଇଲି ସ୍ଥାନ ଆସି ବୁଡ଼ିଲାଣି ବେଳ । ବେ. ପ.

ବୁଡୁବୁଡୁ, ଅଂ. (ଦେଶଜ) ଅନୁକରଣ ଶବ୍ଦବିଶେଷ ।

ବୁଡ଼ବୁଡ଼ୁଆଣି, ବୁଡ଼ୁବୁଡ଼ାଣି, ବୁଡ଼ୁବୁଡ଼ୁଆଣି, ବି. (ଦେଶଜ) ଉର୍ଣ୍ଣନାଭି ପୋକ ।

ବୁଢ଼ା, ବି.(ବୃଦ୍ଧ ଶବ୍ଦଜ, ପ୍ରାକୃତ ବୁଡ଼୍ଢ଼ ଶବ୍ଦଜାତ) ବୃଦ୍ଧ; ପ୍ରାଚୀନ ।

ବୁଢ଼ାଲେଙ୍କା, ବି. (ଦେଶଜ) ରାଜକର୍ମଚାରୀଙ୍କ ଉପାଧି ବିଶେଷ ।

ବୁଢ଼ି, ବୁଢ଼ୀ, ବି. ସ୍ତ୍ରୀ. (ବୃଦ୍ଧା ଶବ୍ଦଜ, ପ୍ରାକୃତ ବୁଡ଼୍ଢ଼ା ଶବ୍ଦଜାତ) ବୃଦ୍ଧା ।

ବୁଢ଼ିଆଣି, ବି. (ଦେଶଜ) ବୁଡ଼ୁବୁଡ଼ିଆଣି ପୋକ ।

ବୁଣା, ବି. (ଦେଶଜ) ବପନକରିବା; ବିଞ୍ଚିବା; ବସ୍ତ୍ରାଦି ବୟନ କରିବା ।
ବିଂ. ବିଞ୍ଚା ହୋଇଥିବା; ଯହିଁରେ ବିଞ୍ଚା ହୋଇଥାଏ; ବୟନ କରି ଯାଇଥିବା ।

ବୁଣିପଡ଼ିବା, କ୍ରି. (ଦେଶଜ) ବିଞ୍ଚିହେବା ।

ବୁଣିବା, କ୍ରି. (ଦେଶଜ) ବପନକରିବା; ଇତସ୍ତତଃ ବିଞ୍ଚିବା । ଯଥା—
କହ୍ନ ନକ୍ଷତ୍ର ବୋଲି ଯେ ଦିଶୁଛି,
କୁନ୍ଦା କଣି ବୁଣି ହୋଇଯାଇଛି । ର. ପ.
ବସ୍ତ୍ରାଦି ନିର୍ମାଣ କରିବା । ଯଥା—
ଜାଲ ବୁଣୁ ବୁଣୁ କୁଳୁଁ ନୋଳିଆଣୀ
ଦିଅନ୍ତି ହର୍ଷେ ଉତ୍ତର । ପାବଣ୍ଡି ।

ବୁଣିହେବା, କ୍ରି. (ଦେଶଜ) ଚାରିଆଡ଼େ ବିକ୍ଷିପ୍ତ ହେବା; ( ବୁଣିବା ଶବ୍ଦ ଦେଖ । )

ବୁଦା, ବି. (ଦେଶଜ) କ୍ଷୁଦ୍ରଗୁଳ୍ମ । ଯଥା—
ବୁଦାର ପଛରେ ଲୁଚିଲେ,
ନାରଦ ପ୍ରତ୍ୟକ୍ଷେ ଦେଖିଲେ । ଭ୍ର. ଦ. ସ୍କ.
ସାମାନ୍ୟ ବଣ; ବଳ ଛେଳି ।

ବୁଦୁକା, ବି. (ଦେଶଜ) ଲତାଫଳବିଶେଷ; ଏକପ୍ରକାର ଗଛ ।

ବୁଦୁବୁଦୁ, ବି. ( ବୁଦ୍‌ବୁଦ ଶବ୍ଦଜ ) ପାଣି-ଫୋଟକା । ଯଥା—
ହଂସରୁ ପରମ ଯେ ପରମୁ ହେଲି ଫେନ,
ଫେନରୁ ବୁଦୁବୁଦୁ ତହିଁରୁ ଅଣ୍ଡ ଜନ୍ମ । ନୃ.ସ୍ତ.ପ.ତ.
ଜଳପତନ ଶବ୍ଦ ।

ବୁଦ୍ଧ, ବି. ( ବୁଧ୍-ତ ) ବିଷ୍ଣୁଙ୍କ ଅବତାରବିଶେଷ; ବୌଦ୍ଧମତ ପ୍ରଣେତା । ବିଂ. ବିଦିତ, ଜ୍ଞାତ; ଜାଗରିତ ।

ବୁଦ୍ଧି, ବି. ସ୍ତ୍ରୀ. ( ବୁଧ୍-ତି ) ଜ୍ଞାନ, ବୋଧ; ମନୋବୃତ୍ତିବିଶେଷ, ଅନ୍ତଃକରଣ ।

ବୁଦ୍ଧିବୃତ୍ତି, ବି. ସ୍ତ୍ରୀ. ବୁଦ୍ଧିର ଧର୍ମ ।

ବୁଦ୍ଧିସଦ୍ମ, ବି. ( ବୁଦ୍ଧି-ସଦ୍ମ = ଗୃହ, ସ୍ଥାନ ) ଚିତ୍ତ, ହୃଦୟ । ଯଥା—
ପ୍ରୋଷ୍ଠୀସମାସ୍ଫାଳିତ-ନାଳ ପଦ୍ମପ୍ରାସ୍ତେ
କମ୍ପା ଚଞ୍ଚଳବୁଦ୍ଧି ସଦ୍ମ । ଜା. ପ. ନା.

ବୁଦ୍ଧିସହାୟ, ବି. ( ବୁଦ୍ଧି-ସହାୟ ) ମନ୍ତ୍ରୀ, ପରାମର୍ଶଦାତା ।

ବୁଦ୍ଧୀନ୍ଦ୍ରିୟ, ବି. (ବୁଦ୍ଧି-ଇନ୍ଦ୍ରିୟ) ମନଃ, ଚକ୍ଷୁ, ଶ୍ରୋତ୍ର, ନାସିକା, ଜିହ୍ୱା, ତ୍ୱକ୍ ।

ବୁଦ୍‌ବୁଦ, ବି. ସଂ. ଜଳର ଭୁଡ଼ୁଭୁଡ଼ା; ଗର୍ଭସ୍ଥ ଅବୟବବିଶେଷ ।

ବୁଧ, ବି. (ବୁଧ୍-ଅ) ଚନ୍ଦ୍ରଙ୍କର ପୁତ୍ର, ବୁଧଗ୍ରହ; ପଣ୍ଡିତ ।

ବୁଧରତ୍ନ, ବି.(ବୁଧ-ରତ୍ନ = ମଣି)ମରକତମଣି ।

ବୁଧାନ, ବି. ( ବୁଧ୍ = ଜାଣିବା-ଆନ ) ଗୁରୁ; ଜ୍ଞାନବ୍ୟକ୍ତି; କବି । ବିଂ. ପ୍ରିୟବାଦୀ; ବ୍ରହ୍ମବାଦୀ ।

ବୁଧ୍ନ, ବି. (ବୁଧ୍ = ଜାଣିବା-ନ) ଶିବ । (ବନ୍ଧ୍-ନ) ବୃକ୍ଷମୂଳ ।

ବୁନିଆଦ, ବୁନିୟାଦ, ବି. (ଯାବନିକ) ଭିତ୍ତି-ମୂଳ; ମୂଳ; କଥାର ଜଡ଼ ।

ବୁନ୍ଦା, ବି. (ବିନ୍ଦୁ ଶବ୍ଦଜ) ବିନ୍ଦୁ । ଯଥା—
ନିର୍ଘୂନ ଗାତରେ ଶାରାଗଣ୍ଡଦେଇ
କହିଲ ବୁନ୍ଦାଏ ଲୁହ । ଛ. ସା. ୧୮.୮.

ବୁନ୍ଧଆ, ବି. (ଦେଶଜ) ଏକପ୍ରକାର ଘୃତପକ୍ୱ ମିଷ୍ଟ ଖାଦ୍ୟଦ୍ରବ୍ୟ । (ବେଶନ୍ ଶବ୍ଦ ଦେଖ ।)

ବୁବୁଧାନ, ବି.(ବୁଧ୍ = ଜାଣିବା-ଆନ)ଆଚାର୍ଯ୍ୟ; ପଣ୍ଡିତ; ଦେବତା ।

ବୁଭୁକ୍ଷା, ବି. ସ୍ତ୍ରୀ. (ଭୁଜ୍ = ଖାଇବା-ସନ୍-ଦ୍ୱିତ୍ୱ-ଅ-ଆ) ଭୋଜନେଚ୍ଛା, କ୍ଷୁଧା । (ବିଶେଷଣରେ ବୁଭୁକ୍ଷୁ ଓ ବୁଭୁକ୍ଷିତ ହୁଏ ।)

ବୁଭୁତ୍ସା, ବି. ସ୍ତ୍ରୀ. (ବୁଧ୍ = ଜାଣିବା-ସନ୍-ଦ୍ୱିତ୍ୱ-ଅ-ଆ, ଧ = ତ) ଜାଣିବାର ଇଚ୍ଛା, ଜିଜ୍ଞାସା । (ବିଶେଷଣରେ ବୁଭୁତ୍ସୁ ହୁଏ ।)

ବୁଭୂଷା, ବି.ସ୍ତ୍ରୀ. (ଭୂ = ହେବା-ସନ୍-ଦ୍ୱିତ୍ୱ-ଅ-ଆ) ସମ୍ଭବେଚ୍ଛା ।

ବୁର, ବି. (ଦେଶଜ) ଶାଳ୍ମଳୀବୃକ୍ଷ ।

ବୁରବୁଡ଼, ବି. ( ଗଡ଼ଜାତରେ ) ବାଡ଼ ଭାଙ୍ଗି ପଶିବା ।

ବୁରା, ବି. ସ୍ତ୍ରୀ. (ଗଡ଼ଜାତରେ) ଛୋଟା ।

ବୁରୁଗି, ବି. ( ଗଡ଼ଜାତରେ ) ଯେଉଁମାନେ ଆଗନ୍ତୁକଙ୍କ କଥା ମାନନ୍ତି ।

ବୁରୁଜ, ବି. (ଦେଶଜ) ଦୁର୍ଗ ପ୍ରାଚୀରର ଚାରି-କୋଣରେ ସୈନ୍ୟ ଓ ବାରୁଦ ରଖିବା-ପାଇଁ ତୋଳାଇଥିବା ଉଚ୍ଚ ଗୃହ ।

ବୁରୁଳ, ବି. (ଦେଶଜ) ଯବବସ୍ତୁ ପରିମାଣ ।

ବୁରୁବୁରା, ବି. ( ବୁଦ୍‌ବୁଦ ଶବ୍ଦଜ ) ପାଣି-ଫୋଟକା, ଜଳର ଭୁଡ଼ୁଭୁଡ଼ା ।

ବୁରେହ୍ନୀ, ବି. ସ୍ତ୍ରୀ. (ବାରାହୀ ଶବ୍ଦଜ) ଦେବୀ-ବିଶେଷ ।

ବୁଲ୍, ବି. (ଦେଶଜ) ଭ୍ରମଣ । ଯଥା—

ଶମନସ୍ୱସା ତଟ ଅଟବୀବୁଲ୍ । କ. ଚ. ଚ.

ବିଂ. ଯେ ଭ୍ରମଣ କରେ । ଯେପରି—ଦେଶବୁଲ୍ ଲୋକ ।

ବୁଲାଇବା, କ୍ରି. (ଦେଶଜ) ଭ୍ରମଣ କରାଇବା; ଆଜ ଦେବି କାଲି ଦେବି ବୋଲି ଲୋକଙ୍କୁ ବିମୁଖ କରିବା; ଲେଉଟାଇବା; ଭ୍ରମାଇବା; ଆଡ଼ କରିବା । ଯଥା—

ତନୁ ଦାନ ମାଗୁଁ ନେତ୍ର ବୁଲାଇ । ବି. ଚ. ମ.

ବୁଲାଉଣି, ବି. (ଦେଶଜ) ବୁଲାଇବା । ଯଥା—

ଦେଖିଲେ ଖରଯାଙ୍କର ଜିହ୍ୱା ବୁଲାଉଣି,

ପସ୍ତରିଲେ କେତେ କାର୍ଯ୍ୟେ ଅଇଲୁ ତରୁଣି ।

ନୃ. ପ୍ର. ପ୍ର. ତ.

ବୁଲାକ, ବି. ( ଦେଶଜ ) ଏକପ୍ରକାର ନାସା-ଭୂଷଣ, ଦଣ୍ଡି । ଯଥା—

ବନ୍ଦୋବସ୍ତେ ବୁଲାକ ଦଣ୍ଡି,

ବଚନ କୁନ୍ଦନ କୁଞ୍ଚିତ ଦେଇଅଛୁ ମଣ୍ଡି । ସୁ.ପ.

ଭ୍ରମଣଶୀଳ ଅର୍ଥାତ୍ ବୁଲୁଥିବା । ଯଥା—

ପଛ ଦୁଇପଦ ମଧ୍ୟେ ଲାଙ୍ଗୁଳ ରଖି ପଳାୟନ,

ଯେସନେ କରଇ ବୁଲାକ ଶ୍ୱାନ । ଇ. ଧ.

ବୁଲାବୁଲି, ବି. (ଦେଶଜ) ଭ୍ରମଣ ।

ବୁଲି, ବି.ସ୍ତ୍ରୀ. (ବୁଲ୍ = ମଗ୍ନହେବା, ଭାସିଉଠିବା-ଇ) ଭଗ, ସ୍ତ୍ରୀଚିହ୍ନ ।

ବୁଲିବା, କ୍ରି. ( ଦେଶଜ ) ଭ୍ରମଣକରିବା; ବେଢ଼ିବା । ଯଥା—

ଚଉଦିଗେ ମନୋହର ପାଚେରି ବୁଲିଛୁ । ସୁ. ପ.

ପ୍ରତ୍ୟାବର୍ତ୍ତନ କରିବା ।

ବୁଷ, ବୁସ, ବି. ( ବୁସ୍ = ତ୍ୟାଗକରିବା-ଅ ) କୁଣ୍ଡା, ଭୂଷି; ତୁଚ୍ଛଧାନ୍ୟ, ଅଗାଡ଼ ।

ବୁସ୍ତ, ବି. ( ବୁସ୍ତ୍ = ଅନାଦରକରିବା-ଅ ) ପଣସାଦି ଫଳର ଅସାରଭାଗ; ସ୍ଥାଳୀଭ୍ରଷ୍ଟ ମାଂସ ।

ବୁହା, ବି. (ବହ୍ ଧାତୁଜ) ବହିବା ଅର୍ଥାତ୍ ନେବା । ଯଥା—

ରାଜଧର୍ମ ହେଲା ପ୍ରଜାଧନ ବୁହା । ଦ. ବା.

ଜଳାଦି ପ୍ରସରିବା । ବିଂ. ବହନଶକ୍ୟ । ଯଥା—

ନାଗନାଗରେ ଅବନୀ ବୁହା ନ ଗଲା । ବ. ଚ. ମ.

ବହିଥିବା; ବହିବା ଲୋକ ।

ବୁହାଇବା, କ୍ରି. ( ବହ୍ ଧାତୁଜ ) ବହନ କରାଇବା; ପ୍ରସରାଇବା । ଯଥା—

ବୁହାଇ ଗଙ୍ଗା ବକ୍ଷ୍ଟ୍ ପଦ୍ମ
ବହୁତ କ୍ଲେଶ କରାଇଲେ ଶାନ୍ତ । ବୈ. ବ.

ଚଲାଇବା । ଯଥା—

ଅଶ୍ବତ୍ଥାମା ରଥକୁ ଆଗକୁ ବୁହାଇ,
ଅର୍ଜୁନଙ୍କ ବୁକୁକୁ ବନ୍ଧଲେ ରେଷ ବହ୍ନ । କୃ.ଷ୍ଣ.ବ.ପ.

ବୁହେ, ବହେ, କ୍ରି. ବି°. ( ଦେଶଜ ) ଥରେ; ଯଥେଷ୍ଟରୂପେ, ପର୍ଯ୍ୟାପ୍ତରୂପେ ।

ବୃନ୍ଦାଅର୍କ, ବି. (ବୃନ୍ଦାରକ ଶବ୍ଦଜ) ଦେବତା । ଯଥା—

ସ୍ବର୍ଗେ ସାଧୁ ସାଧୁ ତୋତେ କଲେ ବୃନ୍ଦାଅର୍କେ ।
ସା. ଭା. ଆ.

ବୃନ୍ଦାହୁଳ, ବି. (ଦେଶଜ) ଏକପ୍ରକାର ଫହୁଡ଼ି । ଯଥା—

ପଞ୍ଚଷଠି ପଦ୍ମ ବ୍ଲଳଣ ସହସ୍ର ଫହୁଡ଼ି,
ଶତସାଗର ଯେ ବୃନ୍ଦାହୁଳ ଅଛୁ ପଡ଼ି । ସା. ଭା. ସ.

ବୃନ୍ଦାହୋଳ, ବି. (ଦେଶଜ) ଏକପ୍ରକାର ଫଳ ଓ ବୃକ୍ଷ । ଯଥା—

ଲେମ୍ବୁ କମ୍ବିଳ ଟଭା ନାରଙ୍ଗ ବୃନ୍ଦାହୋଳ,
ଅସୁଁଲା ନଡ଼କୋଳ ଖଜୁରି ବେଲ ତାଳ । ନୃ.ପୃ.ତୃ.ଛ.

ବେ, ଅ°. (ବି ଉପସର୍ଗଜାତ) ନାସ୍ତ୍ୟର୍ଥ ।

ବେଅନ୍ଦାଜ, ବି. (ଯାବନକ) ଅପରିମିତ ।

ବେଅରଙ୍ଗ, ବେରଙ୍ଗ, } ବି°. (ଇଂରାଜି ଶବ୍ଦ ବେରଙ୍ଗ-ଶବ୍ଦଜାତ) ଡାକଟିକଟ ନ ଲଗାଇ ଡାକରେ ପଠାଇବା (ପତ୍ରାଦ) ।

ବେଆଇନ, ବି°. ( ଯାବନକ ) ଆଇନ ବା ବ୍ୟବସ୍ଥାବିରୁଦ୍ଧ ।

ବେଆଦବ, ବି°. (ଯାବନକ) ଅବାଧ୍ୟ; ଅଭଦ୍ର । ଯଥା—

ଏ ବେଆଦବ ପିଲାଟା ପାଠରେ ନବାବଙ୍କୁ
ଜଣିବାକୁ ବୁଝୁଥିଲା । ଭ. ସା. ୩. ୭.

ବେଆରାମ, ବି. (ଯାବନକ) ପୀଡ଼ା, ଅଶାନ୍ତ ।

ବେଆରାମୀ, ବି°. (ଯାବନକ) ଅସୁସ୍ଥ ।

ବେଇଁବା, ବେଇବା, } କ୍ରି. ( ଦେଶଜ ) ପଶ୍ବାଦ ପ୍ରସବ କରିବା । ଯଥା—

ଜହ୍ନରୁକ ଦେଲା ଗାଈ,
ଗାଈ ବେଇଁଥିଲା ମାଈ । ହା. ଛ.

ବେଇମାନ, ବି°. ( ଯାବନକ ) ଅଧାର୍ମିକ; ବିଧର୍ମୀ ।

ବେଓଆ, ବେଓୱା, ବି. ସ୍ତ୍ରୀ. ( ଯାବନକ ) ଅନାଥା ସ୍ତ୍ରୀ, ପତିପୁତ୍ରହୀନା ନାରୀ ।

ବେଉତ, ବି. ( ଦେଶଜ ) କାର୍ଯ୍ୟସାଧନ କୌଶଳ ।

ବେଉନ୍ତ, ବି. ( ଦେଶଜ ) ବରାତ; ବର୍ଣ୍ଣନ । ( ବେଉନ୍ତିବା ଶବ୍ଦ ଦେଖ । )

ବେଉନ୍ତିବା, ବି. (ଦେଶଜ) ବାଣ୍ଟିବା । ଯଥା—

ଦନକୁ ଲକ୍ଷେ ହାଣ୍ଡି ଗୋରସ ହୁଏ ଯାହା,
ରାଜ୍ୟରେ ବେଉନ୍ତ ମୁଁ ଦଅଇ ନତ୍ୟେ ତାହା ।
ନୃ. ପୃ. ଦ୍ବି. ଛ.

ବରାତ କରିବା ।

ବେଉର, ବି.(ଦେଶଜ) ନମନ୍ତ୍ରଣପତ୍ର । ଯଥା—

ପ୍ରଥମ ଦବସେ ବରଣ ବେଉର ସାର,
ବଚକ୍ଷଣ ବ୍ରାହ୍ମଣେ ମିଷ୍ଟ ଭୋଜନ କର । ସା. ଭା ଆ.

ବେଉରା, ବେଓରା, ବି. ( ଯାବନକ ) ବାର୍ତ୍ତା; ବିବରଣ । ଯଥା—

ବେଉର କରଣ ଯେ କହ,
କେଉଁ ଦେବତା ଗୃହ କହ । ବି. ପୃ.

ବେଉସା, ବେଉଷା, ବେବସା, } ବି. (ବ୍ୟବସାୟ ଶବ୍ଦଜ) କ୍ଷେତ୍ରରେ କରିବା ଶସ୍ୟାଦ । ଯଥା—

ଇନ୍ଦ୍ର ନ ପାଳଲେ ଏଥି ବେଉଷା ନ ମର,
ରାମ ନାମ ଜଳରେ ବେଉଷା ଯାଇ ଚଳ । ନା.ର.ଗୀ.

ବୁଣାଧାନଗଛ ଫେର ଚଷିବା ।

ବେଓରା, ବି. (ଦେଶଜ) ବ୍ୟାଖ୍ୟା ବା ଟୀକା; ବିବରଣ ।

ବେକ, ବି. (ଦେଶଜ) ଗଳାର ପଛଭାଗ ।

ବେକଷଣ୍ଟି, ବି. ( ଦେଶଜ ) ଗ୍ରୀବାଦେଶ । ଯଥା—

ବେକଷଣ୍ଟା ସଙ୍ଗେ ଗଲା ଉଦଳାଲା ଭାଙ୍ଗି । ମ. ଯା.

ବେକସୁର, କ୍ରି. ବିଂ. ( ଯାବନିକ ) ବିନା-ଦୋଷରେ । ଯଥା—

ଝରଣୀର ପରବର୍ତ୍ତିରେ "ଓଙ୍କାଳ ସିରସ୍ଥା ଡମାହ୍ୱଗର"
ହେଲେ ବେକସୁର ଖଲସ ।   ବା ମା· ପାଞ୍ଜି.

ବେକା, ବି· ( ବାଲେଶ୍ୱର ପ୍ରାନ୍ତରେ କହନ୍ତି ) ଘିଅହାଣ୍ଡି ଓ ଘିଅଘଡ଼ି ।

ବେକାର, ବିଂ. (ଯାବନିକ) ଯାହାର କୌଣସି କାର୍ଯ୍ୟ ନାହିଁ ।

ବେକେ, ବି. ( ଦେଶଜ ) ବେକ ପର୍ଯ୍ୟନ୍ତ ପରିମାଣ । ବିଂ. ତତ୍ପରିମିତ । ଯେପରି— ବେକେ ପାଣିରେ ଠିଆ ହୋଇଅଛୁ ।

ବେଖୁଦ୍, ବିଂ. ( ଯାବନିକ ବେଖୁବ୍ ଶବ୍ଦଜ ) ବୁଦ୍ଧିହୀନ ।

ବେଗଡ଼ା, ବିଂ. (ଦେଶଜ) ନଷ୍ଟ; ବିକୃତ; ଦୁଷ୍ଟ ।

ବେଗମ, ବି.ସ୍ତ୍ରୀ.(ଯାବନିକ) ରାଣୀ; ମାନ୍ୟା ସ୍ତ୍ରୀ ।

ବେଗଳ, ବିଂ. (ଦେଶଜ) ଭିନ୍ନ, ପୃଥକ୍ ।

ବେଗାର, ବି. (ଦେଶଜ ବିଶେଷତଃ ବଙ୍ଗ-ଭାଷାରେ ବ୍ୟବହୃତ) ଟଙ୍କା ପଇସା ନେଇ କାର୍ଯ୍ୟ କରିବା ।

ବେଗି, କ୍ରି. ବିଂ. ( ବେଗ ଶବ୍ଦଜ ) ଶୀଘ୍ର, ତକ୍ଷଣେ । ଯଥା—

ପ୍ରଖର ନଖର ଲାଗି ସେହି ରାମା ଚମକିପଡ଼ିଲା ବେଗି ।
ର. ପ.

ବେଗୁଆର, ବିଂ. (ଦେଶଜ) ବେଗବନ୍ତ ।

ବେଗୁନିଆ, ବି. (ଦେଶଜ) ଗୁଳ୍ମବିଶେଷ ।

ବେଗେ, ବେଗେଣ, କ୍ରି. ବିଂ. (ବେଗ ଶବ୍ଦଜ) ଶୀଘ୍ର । ଯଥା—

ବେଗେଣ ବନ୍ଧାଇ ହାର ଖରଷାଣ ଗିର । ବେ· ହ.

ବେଙ୍ଗ, ବେଙ୍ଗଇ, ବେଙ୍ଗେ, ବେଙ୍ଗେଇ, } ବି. (ଦେଶଜ) ଭେକ । (କଙ୍କଡ଼ା ଶବ୍ଦ ଦେଖ ।)

ବେଙ୍ଗଳା, ବି. ( ଦେଶଜ ) ଧାନ ମର୍ଦ୍ଦିବାକୁ ଅର୍ଥାତ୍ ମଳିବାକୁ ବିସ୍ତୃତ କରି ପକାଇବା ଧାନ କଳାଇ ।

ବେଙ୍ଗା, ବି. (ବ୍ୟଙ୍ଗ ଶବ୍ଦଜ) ରୋଗବିଶେଷ । (ଦେଶଜ) ଆଶଙ୍କା, ଭୟ ।

ବେଙ୍ଗୁଲି, ବି. ( ଦେଶଜ) ମାଈବେଙ୍ଗ । ଯଥା—

ପାଣି ମଧ୍ୟେ କଲେ କଟର କଟର
ବେଙ୍ଗ ଓ ବେଙ୍ଗୁଲିରାଣୀ । ଭ. ସା.

ବେଗୃଲ, ବି. (ଦେଶଜ) ଅନ୍ତିମ । ଯଥା—

ପ୍ରଥମରେ ଶୁଣିଯାଅ ମନ୍ଦିରର ଗୃଲ,
ସିଂହଦ୍ୱାରଠାରେ ବଡ଼ ଦେଖିଲି ବେଗୃଲ । ଭ. ଭ୍ରୁ.

ବେଜନ୍ମା, ବିଂ. (ବିଜନ୍ମା ଶବ୍ଦଜ) ଜାରଜ ।

ବେଜାୟ, ବିଂ. (ଯାବନିକ) ଅନୁଚିତ ।

ବେଜାର, ବିଜାର, ବି. (ଯାବନିକ) ବିରକ୍ତି । ବିଂ. ବିରକ୍ତ, ଅସନ୍ତୁଷ୍ଟ ।

ବେଜୁ, ବି. (ଦେଶଜ) ଏକଶ୍ରେଣୀୟ ଭଣ୍ଡାର ଜାତି । (ଏମାନେ ଗଡ଼ମାଳ, ଉଡ଼ଣି, ବେଜୁ ଓ କାଙ୍ଗୁ ଏପରି ଚାରି ଶ୍ରେଣୀରେ ବିଭକ୍ତ) । ବିଂ. ନପୁଂସକ ।

ବେଞ୍ଚ, ବି. ( ଇଂରାଜି ଶବ୍ଦ ) କାଷ୍ଠନିର୍ମିତ ଆସନବିଶେଷ ।

ବେଟା, ବି. (ହିନ୍ଦୀ) ପୁଅ । ଯଥା—

ଦଶରଥରାଜ ବେଟା । ବି. ର.

ବେଟୀ, ବି. ସ୍ତ୍ରୀ. (ହିନ୍ଦୀ) ଝିଅ ।

ବେଟୀଚେଟ, ବି. ନୀଚବ୍ୟକ୍ତି ।

ବେଟୀଚେଟୀ, ବି. ସ୍ତ୍ରୀ. ନୀଚ ସ୍ତ୍ରୀ । ଯଥା —

ବେଟୀଚେଟୀ ଗ୍ରର କଲକ୍ଷଣ ଆଲୋ ଉନ୍ଧ,
ସ୍ତ୍ରିଶ୍ରୀ ଜାତି ଅଟୁ ତୋର କସ ବୁଦ୍ଧି ହୋଇ । ସା.ଭା.ବ.

ବେଠି, ବି. (ବିଷ୍ଟି ଶବ୍ଦଜ) ମାଗଣା । ଯଥା—

ବେଠି ବଗିଭ ଦେଇ ସେ ପରଜା ନୋହେ କାହୁ ।
ନୃ. ପୁ. ପ୍ର. ଚ.

ବେଠିଆ, ବି. (ବିଷ୍ଟି ଶବ୍ଦଜ) ବିନାମୂଲ୍ୟରେ ଯେ କାର୍ଯ୍ୟ କରେ । ଯଥା—

ବୋଲନ୍ତି ବନ୍ଧୁ ମୁଁ ତୋର ବେଠିଆ,
ପାଣି ଆଣିବାକୁ ମୋତେ ପଠିଆ ।   ବି. ଚ. ମ.

ବେଢ଼, ବେଢ଼ି, ବି. (ବେଢ଼ ଶବ୍ଦଜ, ବନ୍ଧନାର୍ଥ) ସାଙ୍କୋଳି ବା ଏକପ୍ରକାର ବନ୍ଧନରଜ୍ଜୁ । ଯଥା—

କାହିଁ ପ୍ରେମଶୀଳା ନବବିବାହିତା ବାଳା,
ପକାଏ ରମଣପଦେ ବେଢ଼ିରୂପେ କି ସେ
ନୀଲୋତ୍ପଳଦଳ ଦାମ ରୁଚି ବେନି ଆଖି । ମ. ଯା.

ହାଣ୍ଡି ଉଠାଇବାପାଇଁ ଲୌହନିର୍ମିତ ହତା ।

ବେଢ଼, ବି. (ବେଧ ଶବ୍ଦଜ) ପରିଧି । ଯଥା—
ବେଢ଼ରେ ଅଳତା ଚନ୍ଦ ଅନ୍ତ ଖଚନ୍ଦ । ଲ. ବ.
ଆବରଣ ବା ଘେର । ଯଥା—
ପ୍ରବୀଣ ବାତ ଭୃଙ୍ଗ ପିକ ଘେନ ଯେ ମାର
ପକାଇଛୁ ବେଢ଼ । ର. ପ୍.
ଆଉଂଖା । ଯଥା—
ବଛିଭ ନେନ ବଖ୍ଆଇ ଯୁବତୀରତନ,
ଭରତରେ ବେଢ ଦେଇ ପିନ୍ଧିଲି ବସନ । ଲ. ବ.
ବେଢ଼ଙ୍ଗ, ବିଂ. (ଦେଶଜ) ଅସୁନ୍ଦର ।
ବେଢ଼ଣ, ବି. (ବେଷ୍ଟନ ଶବ୍ଦଜ) ପରିଧି । ଯଥା—
ଗଡ଼ର ବେଢ଼ଣ ନବ ଯୋଜନ ଓସାର । ସା. ଖ. ସ.
ଆବରଣ ।
ବେଢ଼ଣି, ବି. (ବେଷ୍ଟନ ଶବ୍ଦଜ) ବେଷ୍ଟନ । ଯଥା—
କଟିରେ ଶୋହେ ପୀତାମ୍ବର,
ବେଢ଼ଣି ଛନ୍ଦେ ପିନ୍ଧା ଫେର । ଦା. ର.
ବେଢ଼ପ, ବିଂ. (ଦେଶଜ) କୁତ୍ସିତ ଗଠନ, ଅସୁନ୍ଦର ।
ବେଢ଼ା, ବି. (ବେଷ୍ଟନ ଶବ୍ଦଜ) ଗୃହାଦିଗରେ ଘେରଥିବା ପ୍ରାଚୀର; ଆବରଣମଧ୍ୟସ୍ଥ ଭୂଭାଗ । ଯଥା—
ବେଢ଼ା ନ ଶୋଧ କରି ଭଲେ,
ସେବକେ ଯେ ଯାହାର ଗଲେ । ଦା. ର.
ବେଷ୍ଟନ । ଯଥା—
ଲୋଟଣୀ କରି ବେକତଳକୁ ଜୁଡ଼ା,
କରିଥିବ ତର୍ହିରେ କଆପନ ବେଢ଼ା । କୃ. ଖ. ବ. ପ.
ଥରେ ପରିଭ୍ରମଣ । ଯଥା—
ଠକ ଭଣ୍ଡିଗଲେ କୃଷ୍ଣ ନଇଲେ ବେଢ଼ାଏ ଲୋ ।
କେ. କୋ.
ବିଂ. ବେଢ଼ିଥିବା, ବେଷ୍ଟିତ । (ବୁଢ଼ା ଶବ୍ଦ ଦେଖ ।)
ବେଢ଼ାଣ, ବି. (ବେଷ୍ଟନ ଶବ୍ଦଜ, ଅର୍ଥ ଭିନ୍ନ) ପିନ୍ଧିବା ଲୁଗା; ଅଙ୍ଗର ଆଚ୍ଛାଦନବସ୍ତ୍ର । ଯଥା—
ବଳାହକ ପ୍ରାୟେ ଦଶେ ଦଶନ୍ତ,
ବେଢ଼ାଣ ବାସ ସେବକ ପନ୍ତ । ବୈ. ବ.
ବେଢ଼ିବା, କ୍ରି. (ବେଷ୍ଟ୍ ଧାତୁଜ) ଘେରିବା । ଯଥା—
ଏବେ ବେଢ଼ିଅଛୁ ମନୁଷ୍ୟ ପ୍ରାଚୀର । ନ. କେ.
ବେଣା, ବି. (ବୀରଣ ଶବ୍ଦଜ) ଉଶୀର ।
ବେଣାପଞ୍ଜର, ବି. (ଦେଶଜ) ଶୁକ୍ଳବର୍ଣ୍ଣ ସରୁ ଧାନ ।
ବେଣୁଆ, ବି. (ଗଡ଼ଜାତ ଶବ୍ଦ) ହୁଙ୍କା ।
ବେଣ୍ଟ, ବି. (ବୃନ୍ତ ଶବ୍ଦଜ, ପ୍ରାକୃତ) ପୁଷ୍ପାଦିର ନାଡ଼ । ଯଥା—
ଗୁଳନ୍ତେ ମସ୍ତରେ ଅବେଣ୍ଟ ପଦ୍ମ ଫୁଟଇ । ସା.ଖ.ଆ.
ଶସ୍ତ୍ରାଦିର ମୁଠି; ଛତ୍ରାଦିର ଦଣ୍ଡ । ଯଥା—
ଛତା ପକାଇଣ ବେଣ୍ଟମାନ କରେ ଧରି । ସା. ଖ. ଆ.
(ଦେଶଜ) ପାରିଧି । ଯଥା—
ଅଠାକାଣ୍ଡିଆ ବେଣ୍ଟ କରି,
ପକ୍ଷୀ ଆଣଇ ନଚେ୍ୟ ମାରି । ଦା. ର.
ବେଣ୍ଟକାର, ବି. (ଦେଶଜ) ବ୍ୟାଧ । ଯଥା—
ଭଗଜ ବୋଲିକରି ଏକ ଯେ ବେଣ୍ଟକାର,
ସେ ନଗରକୁ ଯାଇଛୁ ଘେନ ମୃଗଭାର । ସା. ଖ. ସ.
ବେଣ୍ଟି, ବି. (ଦେଶଜ) କେଶ ଗୁଚ୍ଛପାଖରେ ଥିବା କ୍ଷୁଦ୍ର କେଶ । ଯଥା—
ବାପ ତେଲିଶାଣ୍ଟିରେ ଲଣ୍ଡା,
ପୁଅ ବେଣ୍ଟି ରଖୁଚ । ଉ. ସା. ୧୮.୧୧.
ବେଣ୍ଟିବା, କ୍ରି. (ଗଡ଼ଜାତଜ) ଗୁଡ଼େଇବା ।
ବେଣ୍ଟୁଳା, ବେଣ୍ଟଲି, ବି. (ଦେଶଜ) ସ୍ତ୍ରୀ-ମାନଙ୍କର ମଲ୍ଲିକଢ଼ି ନାମକ କର୍ଣ୍ଣାଳଙ୍କାର । ଯଥା—
ବେଣ୍ଟୁଳା ଶ୍ରବଣେ ସଖୀ ଖଞ୍ଜିଲେ । ବୈ. ବ.
ବେତ, ବି. (ବେତ୍ର ଶବ୍ଦଜ, ପ୍ରାକୃତ) ବେତସ ।
ବେତଣ୍ଡା, ବିଂ. (ଉଚ୍ଛୃଙ୍ଖଳାର୍ଥ ବେତଣ୍ଡ ଶବ୍ଦଜ) ଅମାନିଆ; ଦୁଷ୍ଟ ।
ବେତା, ବେତୁଲି, ବି. (ଦେଶଜ) ବାଡ଼ି ଠୋକାଇ (ବେତରେ ପ୍ରହାର ଦେବା) ।

ବେତାଠକା, ବି°. (ଦେଶଜ, ବେ = ନାହିଁ-ତାଠକା = ଭୟ) ନିର୍ଭୟ ।

ବେତାଳ, ବି. ଅସୁରବିଶେଷ । (ବିକଳା ଶବ୍ଦ ଦେଖ) ସଙ୍ଗୀତରେ ତାଳହୀନତା ।

ବେତୁଆ, ବି. (ଦେଶଜ) ବେତ ଧରିବା ଲୋକ; ପାଇକ ବା ଚପରାସି । ଯଥା—
ପ୍ରବେଶି ସିଂହଦ୍ୱାରଠାର,
ଦେଖିଲେ ବେତୁଆ ଅପାର । ଧା. ର.

ବେଦସ୍ତୁର, ବେଦସ୍ତୁର, } ବି. (ଯାବନିକ) ଯାହାର ନିୟମ ବା ଠିକ ନାହିଁ ।

ବେଧ, ବି. (ଦେଶଜ) ଜାରଜ ଗର୍ଭ ।

ବେଧଛୁଆ, ବି. (ଦେଶଜ) ଜାରଜ ।

ବେଧପିଲା, ବି. (ଦେଶଜ) ଜାରଜ । ଯଥା—
ବେଧ ପିଲା ବୋଲି ସିନ୍ଧୁକେ ପୁରାଇ
ଜଳରେ ଦେଲେ ମେଲି ।

ବେଧଫଳ, ବି. (ଦେଶଜ) ଜାରଜ ।

ବେଧାର, ବେଧାରି, } ବି°. (ଦେଶଜ) ଯାହାର ନିୟମ ନାହିଁ ।

ବେଧୁଆ, ବି. (ଦେଶଜ) ଜାରଜ ।

ବେଧୁଇ, ବେଧୋଇ, } ବି. ସ୍ତ୍ରୀ. (ଦେଶଜ) ଯେଉଁ ସ୍ତ୍ରୀ ଜାର ପତି କରେ ।

ବେନାମା, ବେନାମୀ, ବେନାମି, } ବି°. (ଯାବନିକ) ଯାହାର ନାମ ନାହିଁ ।

ବେନାସ୍ତି, ବି. (ଦେଶଜ) କ୍ଷତି । ବି°. ଅସ୍ତ-ବ୍ୟସ୍ତ ।

ବେନି, ବି°. (ପ୍ରାକୃତ ବର୍ଣ୍ଣି ଶବ୍ଦଜାତ) ଦୁଇ, ଉଭୟ ।

ବେନିଏ, ବି°. (ଦେଶଜ) ଦୁହେଁ । ଯଥା—
କାଂଶଙ୍କେ ବେନିଏ ନିକାଞ୍ଚନେ ଏଥି
କରୁଥିଲେ ବିଚରଣ । ଊର୍ବଶୀ ।

ବେପାର, ବି. (ବ୍ୟାପାର ଶବ୍ଦଜ) ବାଣିଜ୍ୟ । ଯଥା—
ପ୍ରବାସେ ରହିଲ ସୌଦାଗର ବେପାରରେ । ବେ. ପ.
କାର୍ଯ୍ୟ । ଯଥା—
ବେପାର ନ ପାରନ୍ତି କରି,
ପୁଣି ଆଣନ୍ତି କୋଳେ ଧରି । ଖ. ଦ. ସ୍ମ.

ବେପାରି, ବି. (ବ୍ୟାପାରୀ ଶବ୍ଦଜ) ବ୍ୟବ-ସାୟକାରୀ ।

ବେବସା, ବି. (ବ୍ୟବସାୟ ଶବ୍ଦଜ) ବ୍ୟବସାୟ । ଯଥା—
କେତେଜଣ କରନ୍ତି ଜୀବିକା,
ତାହାଙ୍କ ବ୍ୟବସା ଯେ କଥାବିକା । ଉ. ସା.

ବେବାକ, ବେବାକି, ବି°. (ଯାବନିକ) ସମସ୍ତ ବା ନିଃଶେଷ ।

ବେଭାର, ବି. (ବ୍ୟବହାର ଶବ୍ଦଜ) ରୀତି ବା କ୍ରମ । ଯଥା—
ଜାଣିଲି ଲୋକକୁ ଏମନ୍ତ ଶୋକକୁ
ଦେବାର ତ ନୁହେଁ ବେଭାର । ର. କ.
ଆଚରଣ । ଯଥା—
କପଟୀ ସହିତେ ଯୁକ୍ତ କପଟ ବେଭାର । ଚେ. ଫ.
ବିବାହାଦିରେ ବନ୍ଧୁଙ୍କୁ କରିବା ମର୍ଯ୍ୟାଦା । ଯଥା—
ସମସ୍ତ ନୃପତିମାନେ ହୋଇଲେ ମେଳଣି,
ଯେ ଯେମନ୍ତ ତେମନ୍ତ ବେଭାର ଦେଲେ ଆଣି ।
ବି. ଗ.
ଆୟ ବ୍ୟୟ କାର୍ଯ୍ୟ ।

ବେଭାରି, ବି. (ବ୍ୟବହାରୀ ଶବ୍ଦଜ) ଯେ ଆୟ ବ୍ୟୟ କାର୍ଯ୍ୟ କରେ; ରାଜକୀୟ ଅଧିକାରୀ ।

ବେମଜା, ବି°. (ଦେଶଜ) ପାଣିଚିଆ; ବିରସ ।

ବେମାର, ବି°. (ଯାବନିକ) ପୀଡ଼ିତ ।

ବେମାରି, ବି. (ଯାବନିକ) ରୋଗ ବା ପୀଡ଼ା ।

ବେୟାଦବ, ବି°. (ଯାବନିକ) ଅସଭ୍ୟ ।

ବେୟାଦବି, ବି. (ଯାବନିକ) ଅସଭ୍ୟତା ।

ବେରଣା, ବି. (ଦେଶଜ) ପାଠଜମି ।

ବେରଣ୍ଡ, ଭରଣ୍ଡ, ବି. (ଦେଶଜ) ମୁଖରେ ବାହାରିବା ବ୍ରଣବିଶେଷ । ଯଥା—
ପିଠିରେ ଛନ କୁଜ ବେକରେ ଗଲଗଣ୍ଡ,
ପେଟରେ ପିଳୋଦ୍ଧ ପୁଣି ମୁଖରେ ବେରଣ୍ଡ ।
ନୃ. ପୁ. ପ. ଭ.

ବେଳ, ବି. (ବେଳା ଶବ୍ଦର ଅପଭ୍ରଂଶ ପ୍ରାକୃତ) ସମୟ । ଯଥା—
ପରଖର ସିନା ନକଷ ବିପତ୍ତି ବେଳ । ଛ. ବ.
ଥର ବା ବାର । ଯଥା—
ଶଏ ବେଳ କହିଲେ ନ ଛାଆଡୁ । ଗୋ. ଖ.

ବେଲ, ବି. (ବିଲ୍ୱ ଶବ୍ଦଜ ପ୍ରାକୃତ ବେଲ୍ଲୋ ଶବ୍ଦ ଜାତ) ବିଲ୍ୱଫଳ ଓ ବୃକ୍ଷ ।

ବେଳଓଡ଼ା, ବି. ( ବାଲେଶ୍ୱର ପ୍ରାନ୍ତରେ ) ଉପରଓଳ ।

ବେଳକୁବେଳ, } କ୍ରି. ବିଂ. (ଦେଶଜ) କ୍ରମେ
ବେଳକବେଳକୁ, } କ୍ରମେ । ଯଥା—

ବେଳକୁବେଳ ସନ୍ତାପ ହୋଇଲା ପ୍ରବଳ । ବୈ. ପ.

ବେଳକେ, କ୍ରି. ବିଂ. (ଦେଶଜ) ଏକସମୟରେ । ଯଥା—

ସେ କନ୍ୟାଠାରୁ ପୁଣି ଜନ୍ମିଲେ ଶକ୍ତିମୁନି,
ପୁଣି ସେ ବେଳକେ ବନ୍ଧ୍ୟା ହୋଇଲେ ଶବରଣୀ ।
ନୃ. ପୁ. ତୃ. ତ.

ବେଲଙ୍କ, ବେଲଙ୍ଗ, ବି. (ଦେଶଜ) ଶସ୍ତ୍ରବିଶେଷ । ଯଥା—

ନାରାଚ ଆସନ୍ତେଣ ଦେଖିଲେ ଚକ୍ରପାଣି,
ବେଲଙ୍କ ପଦ୍ମେ ଶର ବନ୍ଧିଲେ ପ୍ରଭୁ ଟାଣି ।
ନୃ. ପୁ. ଚ. ତ.

ବେଲଣା, ବି. (ବେଲ୍ଲନ ଶବ୍ଦଜ) ରୋଟିଆଦି ବେଲିବା ନିମିତ୍ତ ନିର୍ମିତ କାଷ୍ଠଖଣ୍ଡ ।

ବେଳବୁଡ଼, ବି. (ଦେଶଜ) ସାୟଂକାଳ । ଯଥା—

ସକାଳୁ ବେଳବୁଡ଼ଯାଏ,
ଶିବଙ୍କୁ ସେବା କରୁଥାଏ । ମା. ଧା.

ବେଲଶୁଣ୍ଠା, } ବି. ( ବିଲ୍ୱଶୁଣ୍ଠୀ ଶବ୍ଦଜ )
ବେଲସୁକୁଟା, } ଖଣ୍ଡ ଖଣ୍ଡ କରି ଶୁଖାଇ ରଖିଥିବା ବେଲ ।

ବେଲା, ବି. (ଦେଶଜ) ଧାତୁପାତ୍ରବିଶେଷ ।

ବେଳାବେଳ, କ୍ରି. ବିଂ. (ଦେଶଜ) ଶୀଘ୍ର । ଯଥା—

କହୁଛୁ ଏତେହେଁ ବେଳାବେଳ ଲେଉଟ । ର. କ.

ବେଲି, ବି. (ବ୍ୟଳୀକ ଶବ୍ଦଜ) ଭଙ୍ଗୀ । ଯଥା—

ଅର୍ଜୁନର ଗ୍ଳାନି ବେଲି ତ ଯେତେକ,
ସେପରି ଦଶୁଅଛୁ ହସ୍ତିନା ନାୟକ । କୃ. ଖ୍ରା. ବି. ପ.

ଭଣ୍ଡିବା ବା ମିଥ୍ୟା ।

ବେଲିବା, କ୍ରି. (ଦେଶଜ) ମର୍ଦ୍ଦିବା ।

ବେଳୁଁ, ବେଳୁସୁଁ, କ୍ରି. ବିଂ. (ଦେଶଜ) ପ୍ରଥମରୁ; ଆଗରୁ ।

ବେଳୁଁବେଳ, } କ୍ରି. ବିଂ. (ଦେଶଜ) କ୍ରମେ-
ବେଳୁବେଳୁଁ, } କ୍ରମେ । ଯଥା—

ଅସୁର ମାଇଲେ ହୋଇ ପ୍ରବଳ ଉଭୟ ବଳ ହେ,
ସଂଗ୍ରାମେ ବେଳୁଁବେଳ । ବି. ଗି.

ବେଳେକ, କ୍ରି. ବିଂ. (ଦେଶଜ) ଥରେମାତ୍ର । ଯଥା—

କେତେବେଳେ ଅନ୍ନ ତାକୁ ନ ମିଳେ ବେଳେକ ।
ନୃ. ପୁ. ପ୍ର. ତ.

ବେଲେର, ବେଲୁରି, ବି. (ଦେଶଜ) ଖଟରେ ବୁଣିବା ସୂତ୍ରନିର୍ମିତ ଡୋରବିଶେଷ । ଯଥା—

ବେଲେର ଖଟ ଉପରେ ନେତର ସୁପାଟ । ସା ଭ ଆ.

ବେବର୍ତ୍ତା, ବି. (ବ୍ୟବହର୍ତ୍ତା ପଦ ଜାତ) ରାଜଦତ୍ତ ଉପାଧିବିଶେଷ ।

ବେଶ୍, ବିଂ. (ଯାବନିକ) ଉତ୍ତମ; ଅଧିକ ।

ବେଶନ୍, ବି. (ହିନ୍ଦୀ) ମିଷ୍ଟ ପଦାର୍ଥବିଶେଷ । ଯେପରି—ବେଶନ୍ ଲଡ଼ୁ ।

ବେଶର, ବି. (ଦେଶଜ) ସ୍ତ୍ରୀର ନାସିକାଳଙ୍କାରବିଶେଷ । ଯଥା—

ନାସା ମଣ୍ଡିଣ ବେଶରେ, ପ୍ରବର୍ତ୍ତିଥିବ ହାସରେ ।
ପ୍ରେ. ସୁ. ନି.

ଖପରି ।

ବେଶି, ବେଶୀ, ବିଂ. (ଯାବନିକ) ଅଧିକ । ଯଥା—

ଆମ୍ଭେ ଏବେ ଯାଇଣ ନ କଲେ ସମ୍ଭାବନା,
ଋଷିଙ୍କର କୋଧ ଜାତ ବେଶି ହେବ ସିନା ।
ନୃ. ପୁ. ଦ୍ୱି. ତ.

ବେସ, ବି. (ବେଶ ଶବ୍ଦଜ ପ୍ରାକୃତ) ନେପଥ୍ୟ ଅର୍ଥାତ୍ ପୋଷାକ ଓ ଅଳଙ୍କାର ଧାରଣ ।

ବେସର, ବେଶର, ବେସ୍ୱର, ବି. (ବେଶବାର ଶବ୍ଦଜ) ବଟା ସୋରିଷ; ବଟା ସୋରିଷ ଦେଇ ରାନ୍ଧିବା ତିଅଣ ।

ବେସରପୁରିଆ, ବି. ( ଦେଶଜ ) ବୈଦିକ ବ୍ରାହ୍ମଣଙ୍କ ଶ୍ରେଣୀବିଶେଷ । ଯେପରି—ବେସରପୁରିଆ ବସୁ ।

ବେସରମ, ବେସରମି, ବିଂ. (ଯାବନିକ) ନିର୍ଲ୍ଲଜ୍ଜ ।

ବେସି, ବି. (ଗଡ଼ଜାତ ଶବ୍ଦ) ଦାଣ୍ଡଘର ।

ବେହମ୍ବା, ବେହ୍ୱୟା, } ବିଂ. (ଯାବନିକ) ନିର୍ଲ୍ଲଜ୍ଜ,
ବେହାୟା, } ଲଜ୍ଜାବିହୀନ ।

ବେହରଣ, ବି. (ଦେଶଜ) ସଭା । ଯଥା—

ବେହରଣ ଭାଙ୍ଗି ବିଶ୍ରାମ ମୂଳ କରି । ବୈ. ବି.

ବେଢ଼ା, ବି. (ବିବାହ ଶବ୍ଦଜ) ବିବାହ । ଯଥା—

ତୁ ଯେବେ ବାନ୍ଧି ପାରୁ ଏଢ଼ା,
ନିଶ୍ଚୟେ କନ୍ୟା ଦେବି ବେଢ଼ା । ଭା. ଦ. ସ୍କ.

ବେହାର, ବି. (ବିହାର ଶବ୍ଦଜ) ଭ୍ରମଣ । ଯଥା—
ମୋହ ଇଚ୍ଛାରେ ବସି ବେହାର କରେ ନତ୍ତୋ ।
ନୃ. ପୃ. ସ. ଛ.

ବେହାରି, ବି. (ବିହାରୀ ପଦ ଜାତ) ଭ୍ରମଣକାରୀ; ବେହାରଦେଶସ୍ଥ ।

ବେହୁର, ବି. (ଦେଶଜ) ଦୁଧ ଆଉଟାଇବା ନିମିତ୍ତ ମାଟିପାତ୍ର ।

ବେହେରା, ବି. ( ଦେଶଜ ) ଗଉଡ଼; କେଉଟ ପ୍ରଭୃତି ଜାତିମାନଙ୍କର ଉପାଧି ଏବଂ ଏମାନଙ୍କର ଅଧିକାରୀ; ଭୃତ୍ୟ । ଯଥା—
ବାବୁପରେ ଢପ ବସାଇ ବେହେରା । ଧ. ବା.

ବେହେରାଣିଆ, ବିଂ. ( ଦେଶଜ ) ରକ୍ଷିତା ସ୍ତ୍ରୀଠାରୁ ଜାତ ହେବା ସନ୍ତାନ ।

ବେହେରାଣୀ, ବି. ସ୍ତ୍ରୀ. (ଦେଶଜ) ବେହେରାର ସ୍ତ୍ରୀ ।

ବେହେଲା, ବେହଲା, ବି. ( ବଲ୍ଲକୀ ଶବ୍ଦଜ ) ବାଦ୍ୟଯନ୍ତ୍ରବିଶେଷ ।

ବେହୋଶ, ବିଂ. (ପାରସ୍ୟ) ଅଜ୍ଞାନ; ମତ୍ତ ।

ବୈଠକ, ବି. (ଦେଶଜ) ସଭା, ଅଧିବେଶନ ।

ବୈଠି, ବି. ( ଦେଶଜ ) ପାଷାଣର ନିମ୍ନସ୍ଥ ଆଧାର; ପାଦର ନିମ୍ନଭାଗ ।

ବୈଠିକି, ବି. (ଦେଶଜ) ବିପରୁଖା ।

ବୈଡ଼ୁର୍ଜ, ବି. (ବୈଦୂର୍ଯ୍ୟ ଶବ୍ଦଜ) ରତ୍ନବିଶେଷ ।

ବୈଭୋଗ, ବି. (ବିଭୋଗ ଶବ୍ଦଜ) ସୁଖଭୋଗ । ଯଥା—
ସୀତା ଘେନି ଅଯୋଧ୍ୟାରେ କରବେ ବୈଭୋଗ ।
ନୃ. ପୃ. ଭୃ. ଚ.

ବୈରଖ, ବି. (ଦେଶଜ) ଚିହ୍ନଳ ବା ପତାକା ।

ବୈଶାଳୀ, ବୈଶାଲ, ବି. (ବହୁଃଶଳାକ ଶବ୍ଦଜ) ଭୂତ ଓ ବିବାହରେ ବେଦୀ ନିକଟରେ ଯେଉଁ ବଂଶଯଷ୍ଟି ପୋତାଯାଏ । ଯଥା—
ଗନ୍ଧାଦିବାସ କରି ବୈଶାଳୀ ପୋତସାରି,
ପଞ୍ଚାଗ୍ନି ହୁ ପକାଇ ବାପୁକ ନାମ ଧରି । ନୃ.ପୃ.ଦ୍ଵି.ଚ.

ବୈସମ, ବୈଷମ, ବି. ( ବୈଷ୍ଣବ ଶବ୍ଦଜ ) ବୈଷ୍ଣବ ।

ବୋଆଳୁ, ବହାଳୁ, ବି. (ବହୁବାରକ ଶବ୍ଦଜ) ବୃକ୍ଷବିଶେଷ ।

ବୋଇତ, ବୋହିତ, ବି. ( ବହିତ୍ର ଶବ୍ଦଜ, ପ୍ରାକୃତ ବଇତ୍ତିରୁ ଜାତ) ଜାହାଜ । ଯଥା—
ଦୁଃଖସାଗରରେ ତାର ବୋଇତ ବୁଡ଼ିଲା । ବେ.ପ.

ବୋଇତୁଆଳ, ବୋହିତୁଆଳ, ବୋଇତିଆଳ, } ବି. ( ବହିତ୍ରପାଳ ଶବ୍ଦଜ ) ଯେ ଜାହାଜ ବାହିନିଏ, ଜାହାଜ ଅଧିକାରୀ । ଯଥା—
ହୋଇଲା ବୋଇତୁଆଳ ଅତିଶୟ ସୁଖୀ । ଲ. ବ.
ଏହିକାଳେ ଜଣାଇଲେ ବେହକରେ,
ଆସି ବୋହିତୁଆଳେକ ଅଛୁ ଦ୍ଵାରେ । ଲ. ବ.

ବୋଉ, ବୌ, ବି. ସ୍ତ୍ରୀ. (ଦେଶଜ) ମାତା ।

ବୋକ, ବି. (ଦେଶଜ) ଚୁମ୍ବନ, ଚୁକ ।

ବୋକଚ୍ଚ, ବି. (ଦେଶଜ) ଗଣ୍ଠିରି ବା ଗଣ୍ଠିରି, ବୁଜୁଳା ।

ବୋକା, ବିଂ. (ଦେଶଜ) ନିର୍ବୁଦ୍ଧି ବା ମୂଢ଼ । ଯଥା—
ବିଦ୍ଵାନଙ୍କୁ ବଳି ସୁପଣ୍ଡିତ ହେବେ ବୋକା,
ଭଣ୍ଡାଭଣ୍ଡି କରି ସବୁ ଜାଣିବେ ସେ ଏକା । ବେ. ପ.
ପାଷଣ୍ଡ ।

ବୋଝ, ବି. (ଦେଶଜ) ମୁଣ୍ଡରେ ବହିବା ଗୁରୁ ପଦାର୍ଥ; ଭାର । ଯଥା—
ସଂସାରର ବୋଝ ପଡ଼ିବ ଯେବେ,
ଅଲସୁଆପଣ ଗ୍ରହିବ ତେବେ । ହା. ଛ.

ବୋଝାଇ, ବି. ( ଦେଶଜ ) ଭଡ଼ା, ବୋଝବହିବା ମୂଲ ।

ବୋଝାଇ, ବୋଝାଇବା, କ୍ରି. ( ଦେଶଜ ) ବହିବା ।

ବୋଝିଆ, ବିଂ. (ଦେଶଜ) ଯେ ବୋଝ ବହୁଥାଏ ।

ବୋଡ଼ା, ବି. (ବୋଡ୍ର ଶବ୍ଦଜ) ସର୍ପବିଶେଷ । (ଦେଶଜ) ଧାନ୍ୟାଦି ମାପିବା ପରିମାଣପାତ୍ରବିଶେଷ; ବିଲୁଆ ବା ଶିଆଳ ।

ବୋଡ଼ି, ବି. ( ଦେଶଜ ) ବିଂଶତି କପର୍ଦ୍ଦିକା ପରିମାଣ । ଯଥା—
ପାଇ ପଣେ ବୋଡ଼ିଏ ଗଣ୍ଡାଏ ଆଦି କରି,
ଏସନକ ବର୍ତ୍ତେ ମୁହିଁ ଜୀବନ ଆଦରି । ସା.ଲ୍ଲ.ଆ.

